# କରଞ୍ଜିଆବାଲାର ଡାଏରୀ

ସୁଧୀର ଚନ୍ଦ୍ର (ଦାସ)
କରଞ୍ଜିଆ



ପରିବେଷକ
ଭାରତ ଭାରତୀ, ଗଜପତି ନଗର, ସୂତାହାଟ, କଟକ-୭୫୩୦୦୧

Digitized by srujanika@gmail.com

**ମୋ ନାତି ନାତୁଣୀମାନଙ୍କୁ**

ତମେ ସମସ୍ତେ ମୋ ପିଲାବେଳ ଗପ ଶୁଣିବାକୁ ବ୍ୟସ୍ତ କରୁଥିଲ । ଏଣୁ ତମପାଇଁ ଏଇ ଇତିହାସର ଗୋଟିଏ ପର୍ବ ।

Digitized by srujanika@gmail.com

ଗୋଟେ କେଉଁ ନାତିର ସ୍କୁଲଖାତାର ବାକି ଥିବା ପୃଷ୍ଠାରେ ବାବା ତାଙ୍କର ପିଲାଦିନ କଥା ଲେଖିଥିଲେ । ତାକୁ ତାଙ୍କ ବୋହୂ ପାଇଲାକ୍ଷଣି ନେଇ ଛପାଇଦେଲା । ଭୁଲ୍ ଭଟକା କ'ଣ ରହିଲା ଭଲ କରି ଦେଖିବାକୁ ସୁଯୋଗ ମିଳି ନ ଥିଲା । ବାବା ମଧ୍ୟ ତାକୁ ଦେଖି ବହୁ ଜିନିଷ ବାକି ରହିଗଲା ବୋଲି କହିଲେ ସିନା ତାକୁ ବିଶେଷ କିଛି ପରିବର୍ତ୍ତନ ବା ଯୋଡ଼ାଯୋଡ଼ି କରିବାକୁ ସମୟ ପାଇଲେନି । ବାକିତକ ଲେଖିବା ପୂର୍ବରୁ ସେ ୨୪ ମେ ୧୯୯୭ରେ ଚାଲିଗଲେ ଆରପାରିକୁ ।

ଏହି ବହିଟି ପଢ଼ି କିଛି ପାଠକ ପ୍ରଶଂସା କଲେ । ଏଣୁ ଭାବିଲି ଭଲକରି ପଢ଼ି ଯେଉଁଠି ବାବା କିଛି ଯୋଡ଼ିଛନ୍ତି ବା ମାର୍ଜିନରେ କିଛି ଲେଖିଛନ୍ତି ତାକୁ ମିଶାଇ 'ବାବାଙ୍କ ପରିଚୟ' ଜଣେ କେହି ସୁପରିଚିତ ବ୍ୟକ୍ତିଙ୍କ ମାଧ୍ୟମରେ ଦେଇ ପୁଣି ଛାପିଲେ ନିଶ୍ଚେ ପ୍ରକୃତ ପାଠକଙ୍କ ପାଖରେ ଆଦୃତ ହେବ ।

ଏହି ଆଶା ପୂରଣ ହେଲେ ଶ୍ରମ ସାର୍ଥକ ହେବ ।

ଜାପାନୀ

Digitized by srujanika@gmail.com

# ଭୂମିକା

ସେଦିନ ସନ୍ଧ୍ୟାରେ ବାଲେଶ୍ୱର ଗାନ୍ଧି ସ୍ମୃତି ଭବନରେ ଚାଲିଥାଏ କ୍ଷୁଦ୍ର ନାଟକ ପ୍ରତିଯୋଗିତା । ବୋଧହୁଏ ତୃତୀୟ ଦିନ ଦ୍ୱିତୀୟ ନାଟକ । ହଲ୍ ଭର୍ତ୍ତି । ଫାଙ୍କା ଜାଗାରେ ଚେୟାର ପକାଇବା ପରେ ମଧ୍ୟ ପଛପଟେ ଲୋକ ଦି'ଧାଡ଼ି ଗେଞ୍ଜାଗେଞ୍ଜି ହୋଇ ଠିଆ ହୋଇଛନ୍ତି । କଟକରୁ ଆସିଥିବା ଏକ ସୌଖୀନ ନାଟକ ସଂସ୍ଥା ନାଟକ ପ୍ରଦର୍ଶନ କରୁଥାଆନ୍ତି । ନାଟକର ପ୍ରଧାନ ଅଂଶ ଅଭିନୀତ ହେଉଛି, ''ପୁରୀ ସମୁଦ୍ରକୂଳରେ ଏକ ଯୁବତୀର ଗଣଧର୍ଷଣ ।'' ଧର୍ଷଣ ଘଟଣା ଆରମ୍ଭରୁ ଏପରି ଭାବରେ ଜୀବନ୍ତ କରିବାକୁ ଚେଷ୍ଟା କରାଯାଇଛି ଯେ ଦର୍ଶକମାନଙ୍କ ଆଖି ଚଳକୁ ହେବା ଆରମ୍ଭ ହେଲାଣି । ପରିବାର ସହ ବସି ଦେଖୁଥିବା ଦର୍ଶକ ଅସ୍ୱସ୍ତି ଅନୁଭବ କରି, ନା କିଛି କହିପାରୁଥା'ନ୍ତି କି ଉଠି ଯାଇପାରୁ ନ ଥାନ୍ତି । ଏଇତ ଆରମ୍ଭ, ଆଗକୁ କଣ ହେବ ବୋଲି ଆଶଙ୍କା । ହଠାତ୍ ଦ୍ୱିତୀୟ ଧାଡ଼ିରୁ ମଝି ଯିବା ଆସିବା ରାସ୍ତା କଡ଼କୁ ସବୁଦିନେ ବସୁଥିବା ଧଳା ପଗଡ଼ିପିନ୍ଧା ଅଶୀ ବର୍ଷର ବୃଦ୍ଧ ହାତର ବାଡ଼ିକୁ ଉଠାଇ ଚିତ୍କାର କରି ଉଠିଲେ ''ବନ୍ଦକର, ବନ୍ଦକର ଏସବୁ । ଆଧୁନିକ ନାଟକ ନାଁରେ ଏ ଅସଭ୍ୟତା ବନ୍ଦକର । ଏମାନଙ୍କୁ ଚାବୁକ୍ ଦରକାର, ଚାବୁକ୍ '' କହୁ କହୁ ବାଡ଼ିଧରି ଷ୍ଟେଜ୍ ଆଡ଼କୁ ଆଗେଇ ଗଲେ ବୃଦ୍ଧ । ଏ ଚିତ୍କାର ଖୋଲିଦେଲା ଦର୍ଶକଙ୍କର ଧୈର୍ଯ୍ୟର ଦ୍ୱାର । ସମସ୍ତେ ଚିତ୍କାର କଲେ ''ବନ୍ଦକର-ଏ ଅସଭ୍ୟତା ବନ୍ଦକର । ମାର, ଏମାନଙ୍କୁ ମାଡ଼ ଦରକାର'' ଇତ୍ୟାଦି ଇତ୍ୟାଦି । ପ୍ରଥମେ ବାଡ଼ିଧରି ଚିତ୍କାର କରିଥିବା ଲୋକଜଣକ ''ସୁଧୀର ଚନ୍ଦ୍ର'' ।

ବାଲେଶ୍ୱର 'ବିନ୍ଦୁବଳୟ' ନାଟ୍ୟ ସଂସ୍ଥା ତରଫରୁ ୧୯୮୪-୮୫ସାଲରୁ ବାଲେଶ୍ୱର ଗାନ୍ଧି ସ୍ମୃତି ଭବନରେ ପ୍ରାଦେଶିକ ସ୍ତରରେ କ୍ଷୁଦ୍ର ନାଟକ ପ୍ରତିଯୋଗିତା ଆରମ୍ଭ ହୋଇଥିଲା । କଲେକ୍ଟର ଈଶ୍ୱର ଚନ୍ଦ୍ର ଦାସ, ପ୍ରିୟବ୍ରତ ପଟ୍ଟନାୟକ ଡି.ଆଇ.ଜି/ଏସ୍.ପି ମୋହନ ନାୟକ, ଇନ୍ଦ୍ରଜିତ୍ ଯାଚକ୍, ଦିଲ୍ଲୀପ ରଥ, ସୁଶୀଲ ପ୍ରଧାନ ପ୍ରଭୃତି ଅଫିସରଙ୍କ ସହ ସହରର ଅନ୍ୟାନ୍ୟ ଅଫିସର ଓ ଗଣ୍ୟମାନ୍ୟ ଧନୀବ୍ୟକ୍ତିଙ୍କ ପୃଷ୍ଠପୋଷକତାରେ ସୁଧୀର ଚନ୍ଦ୍ରଙ୍କ ପୁଅ ଜାପାନୀ ବାବୁଙ୍କ ଦ୍ୱାରା ଆରମ୍ଭ ହୋଇ ବହୁବର୍ଷଧରି ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ (ବଲାଙ୍ଗିର, କଳାହାଣ୍ଡି, ବରଗଡ଼, ସମ୍ବଲପୁର, ସୁନ୍ଦରଗଡ଼, ଢେଙ୍କାନାଳ, ବ୍ରହ୍ମପୁର, ପୁରୀ, ଜଟଣୀ, ଭୁବନେଶ୍ୱର, କଟକ, କେଉଁଝର, ବାରିପଦା ଇତ୍ୟାଦି



Digitized by srujanika@gmail.com

ପ୍ରାୟ ପ୍ରତ୍ୟେକ ଜିଲ୍ଲାରୁ) ନାଟକ ସଂସ୍ଥାଙ୍କ ଏକ ବିଶେଷ ସମାଗମର ବ୍ୟବସ୍ଥା ହେଉଥିଲା। ଆଉ ଏହି ନାଟକର ପାଣ୍ଡୁଲିପି ପଠନ ସହ ପ୍ରତ୍ୟେକ ଦିନ ବସି ସବୁ ନାଟକ ଉପଭୋଗ କରୁଥିବା ଏହି ଅଶୀ ବର୍ଷର ବୃଦ୍ଧ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ। ସେ ହେଉଛନ୍ତି ଏହି ବହିର ଲେଖକ ସୁଧୀର ଚନ୍ଦ୍ର ଦାସ।

ତାଙ୍କ ସମ୍ବନ୍ଧରେ ଦି'ପଦ କହିବା ନିହାତି ଦରକାର ମନେ କରୁଛି। କାରଣ ତାଙ୍କୁ ଚିହ୍ନିବା ଲୋକ ବହୁତ କମ୍। ମୟୂରଭଞ୍ଜର କରଞ୍ଜିଆ ପରି ଛୋଟ ଏକ ଆଦିବାସୀ ସହରର ଏଇ ବ୍ୟକ୍ତିଜଣକ ଗୋଟିଏ ବଣଫୁଲ ପରି। କରଞ୍ଜିଆ ସହ ପରିଚିତଙ୍କ ଛଡ଼ା ଅନ୍ୟ କେହି ତାଙ୍କୁ ଜାଣିବା ସମ୍ଭବ ନୁହେଁ। 'କରଞ୍ଜିଆବାଲାର ଡାଏରୀ' ନାମ ଦେବାର କାରଣ ହେଲା ପ୍ରଖ୍ୟାତ ଲେଖକ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ 'କରଞ୍ଜିଆ ଡାଏରୀ'ର 'କରଞ୍ଜିଆ' ସୁଧୀର ଚନ୍ଦ୍ରଙ୍କ ଠିକଣା ବୋଲି ପାଠକଙ୍କୁ ଜଣାଇ ଦେବା। ଶାନ୍ତନୁ କୁମାର ଆଚାର୍ଯ୍ୟ କରଞ୍ଜିଆ କଲେଜରେ ଜଏନ୍ କଲାବେଳକୁ ସୁଧୀର ଚନ୍ଦ୍ର ଓ ତାଙ୍କ ସ୍ତ୍ରୀ ଶୈଳବାଳା କରଞ୍ଜିଆରେ ପ୍ରାୟ ରହୁ ନ ଥିଲେ; ତାଙ୍କ ପୁଅ ଜାପାନି, ବିପ୍ଳବ ବା ଝିଅ ମାମୀ, ନନୀ, ଟୁନୀ, ମିନା ଓ ଚିନୁଙ୍କ ପରିବାର ସହ ସମୟ ବିତାଉଥିଲେ।

ସୁଧୀର ଚନ୍ଦ୍ରଙ୍କ ବାପା ନାରାୟଣ ପ୍ରସାଦ ଦାସ ଭଦ୍ରଖରୁ ଉଠିଆସି କରଞ୍ଜିଆରେ ଓକିଲାତି ଆରମ୍ଭ କରିଥିଲେ। ସୁଧୀର ଚନ୍ଦ୍ରଙ୍କ ବଡ଼ଭାଇମାନେ ହେଲେ ଶିରିସ ଚନ୍ଦ୍ର, ସତୀଶ ଚନ୍ଦ୍ର ଓ ସାନଭାଇମାନେ ହେଲେ ସୁଶୀଲ ଚନ୍ଦ୍ର ଓ ଶୈଳେଶ ଚନ୍ଦ୍ର। ସବା ବଡ଼ଭାଇ ଶିରିସ ଚନ୍ଦ୍ର କରଞ୍ଜିଆରୁ ପ୍ରଥମ କନଷ୍ଟିଚୁଏଣ୍ଟ ଏସେମ୍ବ୍ଲିର ସଭ୍ୟଥିଲେ। ସେ, ସୁଧୀର ଚନ୍ଦ୍ର ନିଜେ ଓ ସାନଭାଇ ଶୈଳେଶ ଚନ୍ଦ୍ର କରଞ୍ଜିଆରେ ଓକିଲାତି କରୁଥିଲେ। ତାଙ୍କ ବଡ଼ ଭିଣୋଇ ରାଇରଙ୍ଗପୁରର ହରେକୃଷ୍ଣ ପଟ୍ଟନାୟକ (ପ୍ରାକ୍ତନ ରାଜ୍ୟସଭା ସଦସ୍ୟ ସୁନୀଲ ପଟ୍ଟନାୟକଙ୍କ ବାପା।) ପଶ୍ଚିମ ଓଡ଼ିଶା ବାମଣ୍ଡା ଦେବଗଡ଼ ରାଜ୍ୟର ଦେଓ୍ୱାନ ଥିଲେ। ଦ୍ୱିତୀୟ ଭିଣୋଇ ଶ୍ରୀ ହରେକୃଷ୍ଣ ମହାନ୍ତି ମୟୂରଭଞ୍ଜ ରାଜ୍ୟର ମାଜିଷ୍ଟ୍ରେଟ ଥିଲେ ଓ ସାନ ଡାକ୍ତର ଗୌରାଙ୍ଗ ଚରଣ ପଟ୍ଟନାୟକ ଓଡ଼ିଶା ସରକାରଙ୍କ ସିଭିଲ ସର୍ଜନ୍ ଥିଲେ। ସୁଧୀର ଚନ୍ଦ୍ରଙ୍କ ଜୋଇଁ ଶ୍ରୀ ବୈଷ୍ଣବ ଚରଣ ଦାସ (ଶୈଳଜା କୁମାରୀ ଦେବରକ୍ଷିତା ମାମୀଙ୍କ ସ୍ୱାମୀ) ଡେପୁଟି ଲେବର କମିସନର ଭାବେ, ଶ୍ରୀ ପ୍ରଶାନ୍ତ କୁମାର ପାତ୍ର (ଶୈଳଜା କୁମାରୀ ଜଗତ୍‌ଜିତା, ନନୀଙ୍କ ସ୍ୱାମୀ) ଇରିଗେସନ୍ ବିଭାଗରେ ଚିଫ୍ ଇଞ୍ଜିନିୟର ଭାବେ, ଶ୍ରୀ ସୁବାସ ଚନ୍ଦ୍ର ପଟ୍ଟନାୟକ(ଶୈଳଜା କୁମାରୀ ବାସବଦତ୍ତା, ଟୁନୀଙ୍କ ସ୍ୱାମୀ) ରାଉରକେଲା ଫର୍ଟିଲାଇଜର ପର୍ସୋନେଲ ଡିପାଟମେଣ୍ଟରୁ, ଶ୍ରୀ କବିନ୍ଦ୍ର ପ୍ରସାଦ ମହାନ୍ତି(ଶୈଳଜା କୁମାରୀ ଅପରାଜିତା, ମୀନାଙ୍କ ସ୍ୱାମୀ) ପି. ଡବ୍ଲୁ. ଡି. ରୁ ଇଞ୍ଜିନିୟର୍ ଇନ୍ ଚିଫ୍ ଭାବେ ଓ ସବା ସାନ



Digitized by srujanika@gmail.com

ଡାକ୍ତର ଲକ୍ଷ୍ମଣ ଦାସ (ଶୈଳଜା କୁମାରୀ ଦେବବାଣୀତା, ଚିନୁଙ୍କ ସ୍ୱାମୀ) ମେଡିକାଲ କଲେଜରୁ ଫିଜିଓଲଜି ପ୍ରଫେସର୍ ଭାବେ ଅବସର ଗ୍ରହଣ କରିଅଛନ୍ତି । ବଡ଼ ପୁଅ ସୁଧୀର କୁମାର ବିଜୟେନ୍ଦ୍ର ନାରାୟଣ (ସ୍ତ୍ରୀ ବନ୍ଦନା) ପି. ଡବ୍ଲୁ. ଡି.ରୁ ଇଞ୍ଜିନିୟର୍ ଇନ୍ ଚିଫ୍ ଭାବେ ଓ ସାନପୁଅ ସୁଧୀରକୁମାର ସମରେନ୍ଦ୍ର ନାରାୟଣ(ସ୍ତ୍ରୀ ନଳିନୀ) ଭାଇଜାଗ୍ ଷ୍ଟିଲ୍ ପ୍ଲାଣ୍ଟରୁ ଡାଇରେକ୍ଟର୍ କମର୍ସିଆଲ ଭାବେ ଅବସର ଗ୍ରହଣ କରିଅଛନ୍ତି ।

ସମାଜ ସଂସ୍କାରକ ସୁଧୀରଚନ୍ଦ୍ର ଏକାଧାରରେ ଦେଶ ସେବକ ତଥା ନାଚଗୀତ ନାଟକ ଓ କ୍ରୀଡ଼ା ସଙ୍ଗଠନ ଇତ୍ୟାଦିର ସ୍ରଷ୍ଟା ଥିଲେ । ସେ ନିଜେ ହାରମୋନିୟମ, ଏସରାଜ୍, ତବଲା, ମୃଦଙ୍ଗ ଇତ୍ୟାଦି ବାଦ୍ୟଯନ୍ତ୍ର ବଜାଇ ପାରୁଥିଲେ । ଗୀତ ରଚନା କରି ସ୍ୱର ଦେବା ଓ ଗାଇବା ସହ ଏକକ ତଥା ଗ୍ରୁପ୍‌ନାଚର ପରିକଳ୍ପନା ମଧ୍ୟ କରୁଥିଲେ । ତାଙ୍କ ସାନଭାଇ ସୁଶୀଳଚନ୍ଦ୍ର ଓ ଶୈଳେଶଚନ୍ଦ୍ର ତାଙ୍କୁ ଏ ସବୁପ୍ରକାର କାର୍ଯ୍ୟରେ ବିଶେଷ ସହଯୋଗ କରୁଥିଲେ । କରଞ୍ଜିଆର ଯୁବ କଳାକାରଙ୍କୁ ନେଇ ବଙ୍ଗଳା ନାଟକର ରୂପାନ୍ତର କରି, ତା' ସହ ସ୍ୱରଚିତ ନାଟକ ମଞ୍ଚସ୍ଥ କରାଇବା ଆରମ୍ଭ କରିଥିଲେ । ୧୯୩୨ ସାଲରେ ଥିଏଟର ଗ୍ରୁପ୍ ପ୍ରଦୀପଚନ୍ଦ୍ର ନାଟ୍ୟସଂଘ ତିଆରି କରି ଉପାନ୍ତ ଉତ୍ତର ଓଡ଼ିଶା, ଦକ୍ଷିଣ ବିହାର ଓ ଉତ୍ତର ବାଲେଶ୍ୱର ଅଞ୍ଚଳରେ ନାଟକ ମଞ୍ଚସ୍ଥ କରିବା ବୋଧହୁଏ ବର୍ତ୍ତମାନ ସୁଦ୍ଧା ଇତିହାସରେ ଲିପିବଦ୍ଧ ହେବାର ସୁଯୋଗ ପାଇ ନାହିଁ । ଏହା ନିଶ୍ଚେ ସମସ୍ତ ଉପାନ୍ତ ଅଞ୍ଚଳର କଳାକାରଙ୍କ ଦୁର୍ଭାଗ୍ୟ । ପରବର୍ତ୍ତୀ କାଳରେ ସମ୍ବାଦ ଖବର କାଗଜ ତରଫରୁ ସ୍ୱତନ୍ତ୍ର ପ୍ରତିନିଧି ରବିପ୍ରିୟ ଦାସ ବହୁ ଶ୍ରମ ସହ ମୟୁରଭଞ୍ଜ, କେନ୍ଦୁଝର, ନିଳଗିରି ଅଞ୍ଚଳରେ ଖବର ସଂଗ୍ରହ କରି ସୁଧୀର ଚନ୍ଦ୍ରଙ୍କ ନାଟକ ଜୀବନ ଉପରେ ରେଖାପାତ କରି ଏକ ନିବନ୍ଧ ପ୍ରକାଶ କରିଥିଲେ । କରଞ୍ଜିଆ ସେବା ସଂଘ, କରଞ୍ଜିଆର ଖେଳ, କ୍ଲବ, ନାଚଗୀତ ଥିଏଟର ଇତ୍ୟାଦି ସହ ସେ ଅଙ୍ଗାଙ୍ଗି ଭାବେ ଜଡ଼ିତ । ଆବାଳ ବୃଦ୍ଧ ବନିତା ସମସ୍ତଙ୍କର 'ସାର୍' ହିସାବରେ ସେ ପରିଚିତ । ୧୯୪୫-୪୬ ସାଲରୁ ସେ ନିଜର ତଥା ପିଲାଙ୍କ ନାଁରୁ 'ଦାସ' ସାଙ୍ଗିଆ ଉଠାଇ ଦେଇଥିଲେ । ତାଙ୍କର ମତ ହେଲା ସାଙ୍ଗିଆ ଜାତିର ପ୍ରତୀକ-ଜାତିପ୍ରଥା ଉଠାଇବାରେ ପ୍ରଥମ ପାହାଚ ଏଇ ସାଙ୍ଗିଆକୁ ବିଦା କରିବା । ବହୁ ଆଧୁନିକ ମନୋଭାବର ପରିଚୟ ସେ ସୃଷ୍ଟି କରିଥିଲେ କରଞ୍ଜିଆ ପରି ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ । ଜୀବନର ପ୍ରତିଟି ଦିଗରେ ସୁଧୀର ଚନ୍ଦ୍ରଙ୍କର ଉଦାର ଦୃଷ୍ଟିଭଙ୍ଗୀ ଥିଲା । ଝିଅ ପୁଅଙ୍କ ଭିତରେ ସେ ପାର୍ଥକ୍ୟ ଦେଖୁ ନ ଥିଲେ । ଝିଅ ପୁଅ ଉଭୟ ଶିକ୍ଷା ଓ ଅନ୍ୟାନ୍ୟ ସ୍ତରରେ ସମାନ ସୁବିଧା ସୁଯୋଗ ପାଇବା ଦରକାର ବୋଲି ସେ ଅନୁଭବ କରୁଥିଲେ । ସେତେବେଳେ ହାଇସ୍କୁଲରେ ପୁଅଙ୍କ ସହ ଝିଅମାନେ ପଢ଼ିବାର ସୁବିଧା ନ ଥିଲା ବୋଲି ନିଜର ବଡ଼ଝିଅକୁ ସେ ନିଜର ସଢୁ ଓ ଶାଳୀଙ୍କ ପାଖକୁ ଜାମ୍‌ସେଦ୍‌ପୁର ପଠାଇଦେଇଥିଲେ



Digitized by srujanika@gmail.com

ପଢ଼ିବାପାଇଁ । ନିଜ ପତ୍ନୀ ଶୈଳବାଳା ଦେବୀଙ୍କୁ ମହିଳା ସମିତି ଗଠନ କରିବାରେ ସହଯୋଗ ପ୍ରଦାନ କରିବାକୁ ସେ ପ୍ରଥମେ ପଦକ୍ଷେପ ନେଇଥିଲେ । ପରେ ମହିଳା ସମିତି ସଭ୍ୟାମାନେ ଓ ଅନ୍ୟମାନେ ମିଶି ବହୁ ଚେଷ୍ଟାକରି ବାଳିକା ଉଚ୍ଚ ବିଦ୍ୟାଳୟଟିଏ ଆରମ୍ଭ କରାଇଥିଲେ । ପ୍ରତି ବର୍ଷ ନିଜ ପରିବାରର ପିଲାମାନଙ୍କୁ ନେଇ ପୂଜାଛୁଟି ଓ ଗ୍ରୀଷ୍ମଛୁଟିରେ ଡ୍ରାମା ବା ଭେରାଇଟି ସୋ କରାଇ ପିଲାମାନଙ୍କ ଭିତରେ କଳାପ୍ରତି ସମ୍ମାନ ଓ ଆଦର ବଢ଼ାଉଥିଲେ । ଝିଅମାନଙ୍କୁ ସମସ୍ତ ପ୍ରକାର ଶିକ୍ଷାଦେଇ ଆତ୍ମନିର୍ଭରଶୀଳ କରାଇବାକୁ ସେ ଚେଷ୍ଟା କରୁଥିଲେ । ଝିଅମାନଙ୍କୁ ବିବାହ ଦେବା ସମୟରେ ଥିବା ପ୍ରଚଳିତ ଯୌତୁକ ପ୍ରଥାକୁ ସେ ବିରୋଧ କରୁଥିଲେ । ବିନା ଯୌତୁକରେ ଯେଉଁ ପିଲା ତାଙ୍କ ଝିଅମାନଙ୍କୁ ବାହାହେବେ ସେଇମାନଙ୍କୁ ହିଁ ସେ ଝିଅ ବାହାଦେବେ ବୋଲି ଶପଥ କରିଥିଲେ । ଭଗବାନଙ୍କ କୃପାରୁ ସେ ତାଙ୍କର ପାଞ୍ଚ ଝିଅଙ୍କପାଇଁ ନିଜ ମନପସନ୍ଦ ଜୋଇଁ ପାଇଥିଲେ ।

ସୁଧୀର ଚନ୍ଦ୍ରଙ୍କ ସ୍ତ୍ରୀ ଶୈଳବାଳାଙ୍କ ସମ୍ପର୍କରେ ଦି'ପଦ କହିବା ନିହାତି ଉଚିତ ହେବ । କାରଣ ସୁଧୀର ଚନ୍ଦ୍ର ନାଚଗୀତ କ୍ଲବ ଖେଳରେ ମାତିଲାବେଳକୁ ତାଙ୍କ ସ୍ତ୍ରୀ ଘର ତଥା ଚାଷବାସର ଓ ପିଲାମାନଙ୍କର ଭାର ସମ୍ପୂର୍ଣ୍ଣ ନିଜ ମୁଣ୍ଡକୁ ନେଇଥିଲେ । ଘରେ ବହୁ ସନ୍ଧ୍ୟାରେ 'ଗାନ୍ ବାଜ୍‌ନା'ରେ ସେ ସାହାଯ୍ୟ ଖାଲି ନୁହେଁ ଭାଗ ନିଅନ୍ତି ମଧ୍ୟ । ବେଳେ ବେଳେ ହାରମୋନିୟମ୍‌ରେ ସ୍ୱର ମଧ୍ୟ ମିଳାଇ ଗୋଟେ ଦି'ଟା ଗୀତ ଗାଇ ଦିଅନ୍ତି । ଖାଲି ସେତିକି ନୁହେଁ, ତାଙ୍କ ଲେଖା 'ଗୀତିକବିତା' ସୁଧୀର ଚନ୍ଦ୍ର ସ୍ୱର ଦେଇ ଥିଏଟରରେ ଉପସ୍ଥାପନା କରନ୍ତି । ଶୈଳବାଳା ମଧ୍ୟ ଏକାଧାରରେ ଜଣେ ସମାଜସେବୀ, ବନ୍ଧୁବତ୍ସଳା ସୁଗୃହିଣୀ ନାରୀ ।

କରଞ୍ଜିଆରେ ସୁଧୀର ଚନ୍ଦ୍ରଙ୍କ ଘର ଓଡ଼ିଶା ନାଟକର ଏକ ଏକ୍ସୁଡ଼ିଶାଳ ବୋଲି କୁହାଯାଇପାରେ । ତାଙ୍କରି ନାଟକ ଅନୁଷ୍ଠାନରୁ ଜନ୍ମ ଥିଏଟର-ସିନେ ଆର୍ଟିଷ୍ଟ ତାଙ୍କ ଶଳା ଭୋଳାନାଥ ଦାସ । ସେଇ 'ଘରାନା'ରୁ ବାହାରି ଥିଏଟର ଓ ସିନେ ଜଗତର ବିଖ୍ୟାତ ଅଭିନେତା ତଥା ନିର୍ଦ୍ଦେଶକ ଶ୍ରୀ ଅଜିତ ଦାସ ଆଜି ସାରା ଓଡ଼ିଶାରେ ବିଶେଷ ଖ୍ୟାତି ଲାଭ କରିଛନ୍ତି । ଶ୍ରୀ ଅଜିତ ଦାସ ସୁଧୀର ଚନ୍ଦ୍ରଙ୍କ ସାନଭାଇ ଶୈଳେଶ ଚନ୍ଦ୍ର ଦାସଙ୍କ ପୁଅ । ଗ୍ରୀଷ୍ମଛୁଟିରେ ପରିବାରର ସବୁ ମିଶି ନାଟକ ମଞ୍ଚସ୍ଥ କରନ୍ତି । ପରେ ସାରା ଓଡ଼ିଶାରେ ସୁନାମ କରିଥିବା ପଲ୍ଲବୀ ନାଟ୍ୟସଂସ୍ଥାର ସେ ଥିଲେ ପୃଷ୍ଠପୋଷକ । ପଞ୍ଚାଶୀ ବର୍ଷ ବୟସରେ ପଲ୍ଲବୀ ନାଟ୍ୟସଂସ୍ଥାର ପୌରାଣିକ ନାଟକ 'ବିଜୟୀ ପାଣ୍ଡବ'ରେ ଭୀଷ୍ମ ଭୂମିକାରେ ସୁଧୀର ଚନ୍ଦ୍ରଙ୍କ ନାଟ୍ୟକାର ଜୀବନର ଶେଷ ଅଭିନୟ ।



Digitized by srujanika@gmail.com

ପଲ୍ଲବୀ ଅନୁଷ୍ଠାନ ତାଙ୍କ ସ୍ମୃତିରେ ପ୍ରତି ବର୍ଷ ବାର୍ଷିକୋତ୍ସବ ପାଳନ କରନ୍ତି ଏକ ନୂଆ ନାଟକ ନେଇ । ଜଣେ ନାଟ୍ୟକାରଙ୍କ ପ୍ରତି ଏହାଠାରୁ ବଡ଼ ସମ୍ମାନ କଣ ହୋଇପାରେ ?

ମୋର ଜନ୍ମ କରଞ୍ଜିଆରେ । ସେଇଠି ଛାତ୍ର ଜୀବନ ପରେ ବାରିପଦାରେ ଆମ ପରିବାର ରହିଗଲୁ । ଆମ ବାପା ବଡ଼ବାପା ଗୋସାବାପା ସୁଧୀର ଚନ୍ଦ୍ର ତଥା ତାଙ୍କ ବାପାଙ୍କ ପରିବାର ସହ ଘନିଷ୍ଠ । ମୁଁ ସୁଧୀର ଚନ୍ଦ୍ରଙ୍କ ସମ୍ବନ୍ଧରେ ଯତ୍‌କିଞ୍ଚିତ୍ ଜାଣିଛି ତାହା ଏଇ ସୀମିତ ଆଲୋଚନା ପ୍ରସଙ୍ଗରେ ବଖାଣିବା ସମ୍ଭବ ନୁହେଁ । ତାଙ୍କ ଜୀବନ ଓଡ଼ିଶାର ଆଦିବାସୀ ଅଧୁଷିତ ଉପାନ୍ତ ଅଞ୍ଚଳରେ ସୀମିତ । କିନ୍ତୁ ଅତୀତ ଓଡ଼ିଶା ସଂସ୍କୃତିର ଅନ୍ୟତମ ପ୍ରାଣକେନ୍ଦ୍ର ମୟୂରଭଞ୍ଜର ବାଙ୍ଗିରିପୋଷି ଘାଟି ଆରପାରି ଅଗମ୍ୟ ଅଞ୍ଚଳର ସର୍ବାଙ୍ଗିନ ସାଂସ୍କୃତିକ ଓ ସାମାଜିକ ଜୀବନ ସହ ସୁଧୀରଚନ୍ଦ୍ର ଖାଲି ଓତପ୍ରୋତ ଭାବେ ଜଡ଼ିତ ନୁହେଁ, ପଥପ୍ରଦର୍ଶକ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କ ଜୀବନ ବିଶେଷ କରି କରଞ୍ଜିଆ ଅଧ୍ୟାୟ ଏକ ବିରାଟ ବହି ହେବ । ତାଙ୍କର ଅବଦାନ ଖାଲି ନାଟକ ବା ଖେଳ ଜଗତରେ ସୀମିତ ନୁହେଁ । ତାଙ୍କ ସବୁଠାରୁ ବଡ଼ ଦାନ ହେଲା କରଞ୍ଜିଆ ସେବାସଂଘ । ତା ସହ ପଞ୍ଚାୟତ ଅଶୋକ ଲାଇବ୍ରେରୀ, ଦୋଳିଯାତ୍ରା, ସମାଜସେବା ଇତ୍ୟାଦି ସବୁକ୍ଷେତ୍ରରେ ତାଙ୍କ ସ୍ମୃତି କରଞ୍ଜିଆର ହୃଦୟ ସହ ଅବିଚ୍ଛିନ୍ନ ଭାବେ ଜୀବିତ ଓ ବନ୍ଦିତ ହୋଇ ରହିବ । ତାଙ୍କ ବିଷୟରେ ଦି'ପଦ ଲେଖିବାର ସୁଯୋଗ ଦେଇଥିବାରୁ ମୁଁ ବାଧିତ ।

ସତ୍ୟନଗର,
ଭୁବନେଶ୍ୱର

ସନ୍ତୋଷ କୁମାର ସାହୁ



Digitized by srujanika@gmail.com

# କରଞ୍ଜିଆବାଲାର ଡାଏରୀ

ଯିବି ପୁରୀ। ଯାଜପୁରରୋଡ୍‌ରୁ ଟ୍ରେନ୍ ଧରିବି। କରଞ୍ଜିଆରୁ ସକାଳୁ ବାହାରି ଯାଜପୁରରୋଡ୍‌ରେ ବସ୍‌ରୁ ଓହ୍ଲାଇଲି। ସାଥିରେ ସୁଟ୍‌କେଶ୍‌ଟିଏ କୁଲି ହାତରେ ଦେଇ ପ୍ଲାଟଫର୍ମକୁ ଆସିଲି। କୌଣସି ଓ୍ୱେଟିଂରୁମ୍ ନ ଯାଇ ପ୍ଲାଟଫର୍ମର ଗୋଟିଏ ବେଞ୍ଚିରେ ଯାଇ ବସିଲି। କୁଲି ସୁଟ୍‌କେଶ୍ ସେଠାରେ ରଖିଦେଇ ଗଲା। ଗଲାବେଳକୁ କହିଗଲା ଗାଡ଼ି ପହଞ୍ଚିବା ବେଳକୁ ଆସିବ। ଗାଡ଼ି ଆସିବାକୁ ବହୁତ ବିଳମ୍ବ ଥାଏ। ବସି ବସି ନାନାଦି ଚିନ୍ତା ଆସିବାକୁ ଲାଗିଲା। କେତେଦିନ କେତେ ସ୍ମୃତିନେଇ କେତେ ସୁଖ ଦୁଃଖ ନେଇ ଜୀବନ ନଉକା ମୋର ଭାସି ଚାଲିଛି ଆଜକୁ ଏତେ ବର୍ଷ ଧରି।

ମୋର ବସିଥିବା ବେଞ୍ଚିର ଟିକିଏ ଦୂରରେ ଗୋଟିଏ ମାରଓ୍ୱାଡ଼ି ପରିବାର; ସ୍ୱାମୀ ସ୍ତ୍ରୀ ତିନୋଟି ଛୁଆ। ଗୋଟିଏ ଝିଅ ବୟସ ବାର/ତେର ବର୍ଷ, ବଡ଼ ପୁଅଟି ଛଅ /ସାତ ବର୍ଷ, ସାନ ପିଲାଟି ଦୁଇ/ତିନି ବର୍ଷ। ବଡ଼ ପିଲାଟି ଭାରି ଦୁଷ୍ଟ, କୌଣସି ସ୍ଥାନରେ ସ୍ଥିର ନୁହେଁ। ଅଛି ଅଛି ଦୂରକୁ ଚାଲି ଯାଉଛି। ମାଆ ବିଚାରୀ ଯାଇ ତାକୁ ଧରି ଆଣୁଛି ହାତଧରି। ହାତ ଛାଡ଼ିଦେଲେ ପୁଣି ଧାଉଁଛି। କେବଳ ଟିକିଏ ବାପକୁ ଭୟ। ବାପା ଏପାଖ ସେପାଖ ହେଉଛି। ବାପା ପାଖରେ ଥିଲେ ଟିକିଏ ଶାନ୍ତ ହୋଇ ରହୁଛି। ପିଲାଟିର ଏ ଦୁଷ୍ଟାମୀ ଦେଖି ଦେଖି ମନ ମୋର ସୁଦୂର ଅତୀତକୁ ଫେରିଗଲା। ମୁଁ ଯେତେବେଳେ ଏହି ବୟସର (ତା'ପୂର୍ବକଥା ମନେ ନାହିଁ) ସେତେବେଳେ ମୁଁ କି ଗୁଣ୍ଡା ନ ଥିଲି!

ଆମ ଘରଟି ପୂର୍ବ ପଶ୍ଚିମ ଲମ୍ୱା, ପ୍ରଥମେ ସଦର, ତା'ପରକୁ ରହିବା ଶୋଇବା ଘର ଧାଡ଼ିଏ। ମେଲା ବାରଣ୍ଡା ଲମ୍ବିଯାଇଛି ସଦର ପୁରରୁ ପଛ ଯାଏ। ସେଇ ମେଲାର ଶେଷ ପୁରରେ ରୋଷେଇ, ଠାକୁର, ସରଘର। ପଛକୁ ଅମାର ଓ ଚାକର ବାକର ଓ ତା' ପଛକୁ ଗୁହାଳ। ସବୁ ମିଶି ଛ ଏକର ଜାଗା। ଘରର ଚାରିପଟେ ଗାଁ ରାସ୍ତା। ପୂର୍ବ ପଟେ ବିରାଟ ପୋଖରୀ-ଟା ତଳକୁ ଜମି ଲାଗିଯାଇଛି ଦେଓ ନଦୀ ପର୍ଯ୍ୟନ୍ତ। ଦକ୍ଷିଣକୁ ପ୍ରାଇମେରୀ ସ୍କୁଲ, କୃଷ୍ଣ ବାବୁ (ତାଙ୍କ କଥା ପରେ କହିବି) ଘର-ପଶ୍ଚିମକୁ ଆମ ବାଉଁଶବଣ, ଯେଉଁଠି ସନାହାଡ଼ିର ଘର। ଗାଁରେ ହାଡ଼ି ନ ଥିଲେ ବୋଲି ବାବା ବାହାରୁ ଆଣି ସନାହାଡ଼ିକୁ ଘର ତିଆରି କରିଦେଇ ରହିବାର ବ୍ୟବସ୍ଥା



Digitized by srujanika@gmail.com

କରିଥିଲେ । ଉତ୍ତରକୁ ହରିମିଶ୍ରଙ୍କ ଖଳାବାଡ଼ି । ଆମ ଘରଟି ଗ୍ରାମର ଶେଷ ଘର ପୂର୍ବ ଆଡ଼କୁ । ସଦରପୁରରେ ପ୍ରଥମେ ଗୋଟିଏ ମହାଦେବ ମନ୍ଦିର । ମନ୍ଦିର ସାମ୍‌ନାରେ ବେଲ ଗଛଟିଏ ଓ ଗୋଟିଏ ଦେଖିବା ଭଳି ବଉଳ ଗଛଟିଏ । ତା'ପରେ ଅଗଣାରେ ଗୋଟିଏ ପକ୍କା ବେଦି ଉପରେ ମଧୁମାଳତୀ ଲତାର ସୁଦୃଶ୍ୟ ଚାନ୍ଦୁଆ । ସୀତାହାର ଗଛଟିଏ ଶୀତଦିନେ ଟିକି ମହୁଲ ପରି ଧଳା ଫୁଲରେ ଭରପୂର ହୋଇଯାଏ । ଘରେ ପ୍ରଥମେ ବାରନ୍ଦା ଲମ୍ବା, ଖୋଲା ଘର ଅର୍ଥାତ୍ ତିନିଆଡ଼େ କାନ୍ଥ ଗୋଟିଏ ପଟ ଖୋଲା । ଏହିଠାରେ ଗୋଟିଏ ବଡ଼ କାଠ ଖଟ ତା'ଉପରେ ସେହି ମାପର କମ୍ବଳଟିଏ ବିଛଣା ହୋଇଥାଏ । ପାଖରେ ଆରାମ ଚେୟାରଟିଏ । ସେଥିରେ ମୋ ବାବା ବସନ୍ତି । ତତ୍‌ସମୟରେ ମୋ ବାବା ସେ ଅଞ୍ଚଳର ଜଣେ ଧନୀ ମାନୀ ଓ ପରୋପକାରୀ ବ୍ୟକ୍ତି ଥିଲେ । ସେ ଅଞ୍ଚଳରେ ସମସ୍ତେ ତାଙ୍କୁ ଶ୍ରଦ୍ଧା ଓ ଭକ୍ତି କରଉଥିଲେ । ମନେ ଅଛି ଆମ ଘର ସଦରରେ ସବୁବେଳେ ଲୋକବାକରେ ଭରପୂର ଥାଏ । ସେ ଅଞ୍ଚଳର ସବୁ ରକମର ଦ୍ୱନ୍ଦ୍ୱ ସେହିଠାରେ ନିଷ୍ପତ୍ତି ହୋଇଯାଉଥିଲା । ମୋ ବାବା ଜଣେ ଆଇନଜୀବୀ ଥିଲେ । ସେ ମୋକ୍ତାରୀ ପାଶ୍ ନ କରି ମଧ ସେହିଠାରେ ଆଇନ ବ୍ୟବସାୟ କରୁଥିଲେ । ତା ସହ ସେଠାରେ ବ୍ୟବସାୟ ଆରମ୍ଭ କରିଥିଲେ । ଲୁଗା ଦୋକାନ ଭୁଷା ଦୋକାନ ଥିଲା । କଲିକତାରୁ ସବୁ ଆସୁଥିଲା ଓ ସେଥିପାଇଁ ଗୁମାସ୍ତା ଥିଲେ । ସମ୍ପର୍କୀୟ କୃଷ୍ଣ ଭାଇ ଓ ପରେ ମୋ ଉପର ଭାଇ ଦେଖାଶୁଣା କରୁଥିଲେ । ବସ୍ ମଧ ଚାଲିବା ଆରମ୍ଭ କରାଯାଇଥିଲା କରଞ୍ଜିଆରୁ ବାଙ୍ଗିରିପୋଷି ରେଳଷ୍ଟେସନ୍ ପର୍ଯ୍ୟନ୍ତ-ସେ ପର କଥା ।

ଆମେ ଥିଲୁ ପାଞ୍ଚ ଭାଇ ତିନି ଭଉଣୀ । ମୁଁ ଭାଇମାନଙ୍କ ମଧରେ ଥିଲି ମଧମ । ବଡ଼ଭାଇ ପିଲାଟି ଦିନରୁ ଆମର ମୂଳ ଘରେ ଭଦ୍ରଖଠାରେ ରହି ଦାଦା ଓ ବଡ଼ବାବାପୁଅ ଭାଇମାନଙ୍କ ସହ ପାଠ ପଢୁଥିଲେ । ଛୁଟି ସମୟରେ ଘରକୁ ଆସନ୍ତି-ଏଣୁ ତାଙ୍କୁ ଆମର ଭାରି ଭୟ । ଯେ କେତେଦିନ ରହନ୍ତି ତାଙ୍କପ୍ରତି ମାଆର ବେଶୀ ଆଦର । ସେ କେମିତି ଖାଇବେ କେମିତି ଶୋଇବେ, ସବୁଠାରୁ ଭଲ ଯାହା, ସେ ପାଇବେ ସେଥିପ୍ରତି ମାଆଙ୍କର ସଜାଗ ଦୃଷ୍ଟି । ଚାକର ଗୁମାସ୍ତାମାନେ ମଧ ତାଙ୍କୁ ଟିକିଏ ବେଶୀ ଖାତିର କରନ୍ତି । ମୁଁ ଟିକିଏ ବେଶୀ ଦୁଷ୍ଟ ଥିବାରୁ ମୋତେ ଶାସନ କରିବା ମଧ ତାଙ୍କର ଗୋଟାଏ କାମ ଥିଲା । ମୁଁ ଦୁଷ୍ଟ ଓ ବିଶେଷ ବଳବାନ୍ ଓ ହୃଷ୍ଟପୁଷ୍ଟ ଥିବାରୁ ବାବା ବୋଧହୁଏ ମୋତେ ଟିକିଏ ବେଶୀ ସ୍ନେହ କରୁଥିଲେ । କାରଣ ମୋ ପ୍ରତି ଶାସନ ଟିକିଏ ବେଶୀ ହୋଇଯାଉଥିଲେ ସେ ତହିଁରେ ବାଧା ଦେଉଥିଲେ । ଭ୍ରଦଖରେ କ'ଣ ଅସୁବିଧା ହେବାରୁ ବଡ଼ଭାଇ ମେଦିନୀପୁର ବେଲଦାରେ ଯାଇ ମାଟ୍ରିକ୍ ଦୁଇ ବର୍ଷ ପଢ଼ି, ପାଶ୍ କରିବା ପରେ କଲିକତା ବଙ୍ଗବାସୀ କଲେଜରେ ପଢ଼ିଲେ । ତାଙ୍କ ପାଖରେ ତାଙ୍କ ଖରଚ ଟଙ୍କା କିପରି ଠିକ୍ ତାରିଖରେ ପହଞ୍ଚିବ ସେଥିପାଇଁ ବାବାଙ୍କର କେତେ ଯେ ବ୍ୟସ୍ତତା । ଏଥିପାଇଁ ଗୁମାସ୍ତାମାନଙ୍କୁ ଖୁବ୍ କଡ଼ା ତାଗିଦ



Digitized by srujanika@gmail.com

ଥାଏ । କହନ୍ତି ବିଦେଶରେ ଅଭାବ ହେଲେ ସେ କ'ଣ କରିବ ? ଆମ ଘର ସାମ୍ନାରେ କୃଷ୍ଣଭାଇ ବୋଲି ଜଣେ ସମ୍ପର୍କୀୟ ରହନ୍ତି । ସେ ବାବାଙ୍କର ଅତି ପ୍ରିୟ । ବ୍ୟବସାୟର ସମସ୍ତ ଦାୟିତ୍ୱ ତାଙ୍କରି ଉପରେ । ସେ ମଧ ବାବାଙ୍କୁ ନିଜ ବାପାଙ୍କଠୁ ଅଧିକ ଆଖିରେ ଦେଖୁଥିଲେ । ଆମେ ପିଲାମାନେ ମଧ ତାଙ୍କୁ ଭାଇ ବୋଲି ଜାଣୁଥିଲୁ । ସେ ସମୟ ସମୟରେ ବଡ଼ଭାଇଙ୍କୁ ସାନବେଳେ ପଢ଼ାଇଥିଲେ ମଧ ।

ହଠାତ୍ ଟ୍ରେନ୍ ଆସିବାର ଘଣ୍ଟି ବାଜିଉଠିଲା । ପ୍ଲାଟଫର୍ମରେ ଯାତ୍ରୀମାନଙ୍କର କୋଳାହଳ ବଢ଼ିଉଠିଲା । କୁଲିମାନେ ଆସି ଯେ ଯାହାର ମାଲପତ୍ର ମୁଣ୍ଡରେ ନେଇ ପ୍ରସ୍ତୁତ ହୋଇଗଲେ । ମୁଁ ମଧ କୁଲିକୁ ନେଇ ତୃତୀୟ ଶ୍ରେଣୀରେ ଉଠି ଟି.ଟି.ଆଇ. ସାହାଯ୍ୟରେ ଗୋଟିଏ ସ୍ଥାନ ଅଧିକାର କଲି । କୁଲିକୁ ବିଦା କରିଦେଇ ବିଛଣାପାରି ଦେଇ ଆରାମରେ ବସିଲି । ପ୍ଲାଟଫର୍ମକୁ ଚାହିଁ ଯାତ୍ରୀମାନଙ୍କର ବ୍ୟସ୍ତତା ଦେଖିବାକୁ ଲାଗିଲି । ଏକ୍ସପ୍ରେସ୍ ଟ୍ରେନ୍ ଆଉ କାଳ ବିଳମ୍ବ ନ କରି ଯଥା ସମୟରେ ନିର୍ଦ୍ଦେଶ ପାଇ ହ୍ୱିସିଲ ଦେଇ ଚାଲିବାକୁ ଆରମ୍ଭ କଲା । ଲାଇନର ଦୁଇ ପାଖରେ ଜଳପୂର୍ଣ୍ଣ ଖାଲୁଆ ସ୍ଥାନ । ଗାଡ଼ି ଚକର ଛକ୍ ଛକ୍ ଶବ୍ଦ ସହ ତାଳଗଛ ଟେଲିଫୋନ ଖୁଣ୍ଟ ସବୁ ପଛକୁ ଧାଉଁଥାଏ । ଧୀରେ ଧୀରେ ପୁରୁଣା ସ୍ମୃତି ମନେ ପଡ଼ିଲା ।

ପିଲାଦିନେ ଆମେ କେଡ଼େ ଦୁଷ୍ଟ ନ ଥିଲୁ । ଥରେ ଖରା ଦିନେ ଦ୍ୱିପ୍ରହର ସମୟରେ ସମସ୍ତେ ଘରେ ଶୋଇଥାନ୍ତି, ମୁଁ ଓ ମୋର ଠିକ୍ ଉପର ଭାଇ ଦାଣ୍ଡ ବାରନ୍ଦାରେ ପଡ଼ିଥିବା ଗୋଟିଏ ବେଞ୍ଚ ଉପରେ ବସିଥାଉ । ସେତେବେଳେ ଆମେ ଦୁଇଜଣ ମାଇନର ସ୍କୁଲରେ ପଢୁଥାଉ । ଏ ଖରାରେ ଦାଣ୍ଡ ବାରନ୍ଦାରେ ବସିବା ଉଦ୍ଦେଶ୍ୟ ହେଲା, ଆଉ ତିନି/ଚାରିଜଣ ସାଙ୍ଗଙ୍କୁ ଅପେକ୍ଷା । ସେମାନଙ୍କ ମଧରେ ବୃନ୍ଦାବନ ନନ୍ଦ ବୋଲି ଗୋଟିଏ ପିଲା ଥାଏ, ମହାଧୂର୍ତ୍ତ । ସେମାନେ ଆସିଲେ ଆମେ ସାଥି ହୋଇ ଆମ ଘର ପଛରେ ଥିବା ଧାନ ବିଲରେ ଚରୁଥିବା ଆମ ଘୋଡ଼ାମାନଙ୍କ ମଧରୁ ଗୋଟାକୁ ଧରୁ ଓ ଗୋଟାଏ ସରୁ ଦଉଡ଼ିର ଠିକ୍ ମଝିରେ ଗୋଟାଏ ଫାଶ କରି ତା ମୁହଁରେ ବାନ୍ଧିଦେଉ । ସେ ଦଉଡ଼ିର ଦୁଇ ପାଖ ଧରି ଲଗାମ ପରି ବ୍ୟବହାର କରାଯାଏ । ଜଣ ଜଣ କରି ପାଳି କରି ତା'ଉପରେ ବସୁ ଓ ଆଉ ଜଣେ ଗୋଟିଏ ଛାଟ ବାଡ଼ରୁ ଭାଙ୍ଗି ତାକୁ ପଛ ଆଡୁ ବାଡ଼ାଉ । ଏମିତି ସବାରିକୁ ନେଇ ଚାଲିବା ଘୋଡ଼ାର ବୋଧହୁଏ ଇଚ୍ଛା ନ ଥାଏ, ତଥାପି ମାଡ଼ ଚୋଟରେ କିଛି ବାଟ ଦଉଡ଼େ, ପୁଣି ଚାଲେ । ପୁଣି ମାଡ଼, ପୁଣି ଟିକିଏ ଦଉଡ଼ା । ଏହି ଦଉଡ଼ିବା ସମୟରେ ମୁଁ ଓ ବୃନ୍ଦାବନ ବ୍ୟତୀତ ଆଉ ସମସ୍ତେ ଘୋଡ଼ାରୁ ଖସି ପଡ଼ନ୍ତି । ଆଉ ମୋ ଭାଇ ! ସେ ତ ଘୋଡ଼ାକୁ ଆଦୌ ଦଉଡ଼ାଇବାପାଇଁ ମନା କରନ୍ତି । ଟିକିଏ ବାଟ ଗଲା ପରେ ସେ ଡରରେ ଓହ୍ଲାଇ ପଡ଼ନ୍ତି । ଆମ ଗାଁ ପୂର୍ବ ଦିଗରେ ପୋଖରୀ ଶେଷକୁ ରାସ୍ତା ସରିଥାଏ । ଖରାଦିନ ଦ୍ୱିପ୍ରହରେ କିଏ ବା ନ ଶୋଇ ଆମ କୀର୍ତ୍ତି ଦେଖିବାକୁ ଆସୁଛି । ଏ ଖେଳ କିଛି ସମୟ ଚାଲିବା ପରେ,



Digitized by srujanika@gmail.com

ଲୋକମାନଙ୍କର ନିଦରୁ ଉଠିବା ଆଗରୁ ଘୋଡ଼ା ମୁହଁରୁ ସେ ଦଉଡ଼ିଟି ଖୋଲି, ଲଗାଅ ଛାଟ, ଘୋଡ଼ା ବିଚରା ସେ ମାଡ଼ ଛାଟରୁ ରକ୍ଷା ପାଇବାପାଇଁ ଦେ ଦୌଡ଼ । ଏଟା ଖରାଦିନର ପ୍ରାୟ ନିତିଦିନିଆ ଖେଳ । ଦିନେ ଏମିତି ଖେଳ ସରିବାପରେ ଘୋଡ଼ାକୁ ଛାଟ ଲଗାଇ ଲଗାଇ, ତା ପଛରେ ଦଉଡ଼ିଲି । କିଛି ବାଟ ଯାଇ ସେ ଘୋଡ଼ା ଦେଲା ଗୋଟାଏ ନାତ, ବାଜିଲା ଠିକ୍ ମୋର ଛାତି ଓ ପେଟରେ, ଓଃ କି ଯେ କଷ୍ଟ ! ମୋର ପ୍ରାଣ ଛାଡ଼ିଯିବା ପରି ଲାଗୁଥାଏ । ଭାଇ ଓ ଅନ୍ୟମାନେ ମୋତେ ଧରି ପକାଇ ଦେହ ମୁଣ୍ଡ ଆଉଁଶି ଦେଉଥା'ନ୍ତି । ମୁଁ ପ୍ରାଣପଣେ ନିଃଶ୍ୱାସ ବନ୍ଦ କରି ରହିଥାଏ । କିଛି କ୍ଷଣ ପରେ ନିଜକୁ ସମ୍ଭାଳି ନେଇ ଧୀରେ ଧୀରେ ଘରକୁ ଆସି ସେହି ବେଞ୍ଚରେ ଶୋଇଗଲି । ବୋଧହୁଏ ଦେଢ଼ଘଣ୍ଟା ଶୋଇଥିଲି । ଚାକର 'ମୁରା'ର ଡାକରେ ନିଦ ଭାଙ୍ଗିଲା । ଭାଇ କିନ୍ତୁ ସେତିକିବେଳୁ ଚମ୍ପଟ । ଘର ଭିତରକୁ ଯାଇ ଚୁପ୍ ଚାପ୍ ଶୋଇଥିଲେ । ସେ ଦିନର ସେ କଷ୍ଟ ଅନ୍ୟ କାହାରି ପକ୍ଷରେ ସହ୍ୟ କରିବାର ଶକ୍ତି ନ ଥିଲା । ଏବେ ମନେ ହୁଏ ମୋର ଅସୀମ ଶକ୍ତି ମୋତେ ସେଦିନ ବଞ୍ଚାଇ ଦେଇଥିଲା ।

ଆଉ ଦିନେ ବେଞ୍ଚ ଉପରେ ଦୁଇ ଭାଇ ବସିଥାଉ, ଗୋଟିଏ ଲୋକ ଚାଳିଶ ପର୍ଯ୍ୟନ୍ତ ବଅସ ହେବ, ସେହି ବାଟେ ଯାଉଥାଏ । ମୋ ଭାଇ କହିଲେ ଯା'ତ ତାକୁ ଗୋଟାଏ ଚାପୁଡ଼ା ଲଗା । ମୁଁ ଚାଲିଯାଇ ତାକୁ ଠିଆ ହେବାପାଇଁ କହି କୁଆଡ଼େ ଯାଉଛ ପଚାରିଲି । ସେ ଯେମିତି ଠିଆ ହୋଇ ମୋତେ ଚାହିଁଲା, ମୁଁ ଆଚ୍ଛା କରି ତା' କାନମୂଳରେ ଗୋଟାଏ ଚାପୁଡ଼ା ଲଗାଇଲି । ସେ ବିଚରା ସେହି ଚାପୁଡ଼ାରେ ତଳେ ମୂର୍ଚ୍ଛା ହୋଇଗଲା । ଏହା ଦେଖି ମୁଁ ଫେରି ଆସି ଦେଖେ ତ ଭାଇ ଚମ୍ପଟ । ମୁଁ ଘର ଭିତରକୁ ଯାଇ ବାଲଟିଏ ପାଣି ଆଣି ତା'ମୁଣ୍ଡ ଓ ମୁହଁରେ ଛାଟିବାରୁ ସେ ଚେତା ପାଇ ଉଠି ବସିଲା ଓ ମୋତେ ତା' ଆଗରେ ଦେଖି ଉଠି ଯେତେଦୂର ପାରେ ଧାଇଁ ଚାଲିଗଲା । ପରେ ଭାବିଲି କାହିଁକି ମାରିଲି ? ସେହି ଦିନଠାରୁ ମୁଁ କାହାରିକୁ ଚାପୁଡ଼ା ମାରେ ନାହିଁ ।

ସେତେବେଳେ ମୋ ବୟସ ନଅ/ଦଶବର୍ଷ । ସେ ସମୟରେ ଛୁଆଁ ଅଛୁଆଁଟା ଖୁବ୍ ବେଶୀ ମାତ୍ରାରେ ଥାଏ । ଏପରିକି ସ୍ତ୍ରୀ ଲୋକମାନଙ୍କର ପାଣି ମାଠିଆ ଲୋକ ଛୁଇଁ ଦେଉଥିଲେ ତାହା ମାରା ଓ ଅଶୁଦ୍ଧ ହୋଇଯାଏ । ଆମ ଘର ପାଖକୁ ପୂର୍ବ ଦିଗକୁ ଲାଗି ଗୋଟିଏ ବଡ଼ ପୋଖରୀ ଥାଏ । ଗାଆଁର ଝିଅବୋହୂମାନେ ଉପର ବେଳା ତହିଁରୁ ପାଣି ନିଅନ୍ତି, ରୋଷେଇ ଓ ପିଇବାପାଇଁ । ମୁଣ୍ଡରେ ଓ କାଖରେ କଳସୀମାନ ଧରି ଏକ ସମୟରେ ଦଶ/ବାରଜଣ ସାଥୀ ହୋଇ ଚାଲୁଥାଆନ୍ତି ଏବଂ ସେ ରାସ୍ତାଟି ଠିକ୍ ଆମ ଘର ସାମ୍ନାରେ । ରାସ୍ତାଧାରକୁ ସେହି ବଉଳ ଗଛ । ମୁଁ ଗଛ ଉପରେ ଥାଇ ବଉଳ କୋଳି ଖାଉଥାଏ, କି ମନେ ହୁଏ ହଠାତ୍ ଗଛରୁ ଓହ୍ଲାଇ ପଡ଼ି ସମସ୍ତଙ୍କୁ ଛୁଇଁ ଛୁଇଁ ଦେଇ ପଳାଏ । ସେମାନେ ଆମ ଘରକୁ ଆସି ମାଆ ନିକଟରେ କଳସୀମାନ ରଖିଦେଇ



Digitized by srujanika@gmail.com

ମୁଁ ଛୁଇଁ ଦେବା କଥା କହନ୍ତି । ମାଆ ପ୍ରତି କଳସୀପିଛା ଗୋଟିଏ ଲେଖା ତମ୍ବା ପଇସା ଦିଅନ୍ତି । ସେ ସମୟରେ ବଡ଼ କଳସୀ ଦାମ୍ ଏକ ପଇସା । ପରେ ମୋ କାନ ଧରି ବାବାଙ୍କ ନିକଟକୁ ନେଇ ଯାଇ ମୋ ବିରୁଦ୍ଧରେ ଆପତ୍ତି କରନ୍ତି । ବାବା କେବଳ କହନ୍ତି ଆଉ ସେମିତି ଛୁଇଁବୁ ନାହିଁ । କାନକୁ ଛାଡ଼ି ଦେଇ ପିଠିରେ ଗୋଟାଏ ଚାପୁଡ଼ା । ଏହି ସୁଆଙ୍ଗ ସପ୍ତାହରେ ତିନି/ଚାରିଦିନ ଚଳେ । ସେଥିପାଇଁ ବୋଧହୁଏ ବାବା ପାଣି ଆଣିବା ସମୟରେ ଟହଲ ମାରୁଥାନ୍ତି । ବାବା ବାହାରେ ଥିଲେ ମୁଁ ଘର ଭିତରେ ଥାଏ । ବାବାଙ୍କ ବ୍ୟତୀତ ମୋର ଆଉ କାହାରିକୁ ଭୟ ନ ଥାଏ ।

ହରିଦାସପୁର ଷ୍ଟେସନରେ ଗାଡ଼ି ବନ୍ଦ ହେଲା । ଚା' ବାଲାଠାରୁ ମାଟି ଖୁରାରେ ଚା' ଆଣି ପିଇଲି । ଚା' କି କଅଣ ଜାଣି ପାରିଲି ନାହିଁ, ଗରମ, ନାଲି ରଙ୍ଗ, ଟିକିଏ ମିଠା । ଯାହାହେଉ ଦୁଇ ଖୁରା ଚା' ପିଇ ୨୦ପଇସା ଦେଲି । ଟିକିଏ ସତେଜ ବି ଲାଗିଲା । ଟ୍ରେନ୍ ପୁଣି ଚାଲିଲା.... । ମନ ପୁଣି ପଛକୁ ଫେରିଗଲା । ମୁଁ ଶୁଣିଥିଲି ମୁଁ ଯେତେବେଳେ ପିଲା, ସେତେବେଳେ ରାତିରେ ମୋ ମୁଣ୍ଡ ପାଖରେ ଗୋଟିଏ ତାଟିଆରେ ଗୋଟିଏ ରସଗୋଲା ଓ ଦୁଧସର ରଖାଯାଏ । ରାତିରେ ନିଦ ଭାଙ୍ଗିଲେ ମୁଁ ଖାଏ । କିନ୍ତୁ ମୋ ଛୁଆଙ୍କୁ ତାହା ଦେଇପାରିନି, ସେମାନେ ତାହା ଚାହିଁ ନାହାନ୍ତି । ମାଇନର ସ୍କୁଲରେ ପଢ଼ିବା ସମୟରେ ଆମେ ଦୁଇ ଭାଇ (ମୁଁ ଓ ମୋ ଉପର ଭାଇ) ଖରାଦିନେ ଅଗଣାରେ ଦୁଇଟି ଅଲଗା ଅଲଗା ଖଟିଆରେ ଶୋଉ । ମୁଁ ଯେଉଁ ଖଟିଆରେ ଶୁଏ ତାହା ଟିକିଏ ଲମ୍ବା ଓ ତାକୁ ମୁଁ ପଛ ଦଉଡ଼ି ଟାଣି ଖଟ ଦଉଡ଼ିକୁ ସ୍ପ୍ରିଂ ଭଳି ଟାଣ କରିଥାଏ । ମୋ ବଡ଼ ଭାଇ ଛୁଟିରେ ଘରକୁ ଆସିଲେ ତାଙ୍କପାଇଁ ମଧ୍ୟ ଗୋଟିଏ ଖଟିଆ ବିଛଣା ହୁଏ । କିନ୍ତୁ ମୋ ଖଟିଆ ପରି ତାହା ସେତେ ଟାଣ ନୁହେଁ । ସେଥିପାଇଁ ଭାଇ ଶୀଘ୍ର ଖାଇସାରି ମୋ ବିଛଣାରେ ଶୋଇପଡ଼ନ୍ତି । ମୁଁ ମାଆକୁ ଆପତ୍ତି କରି କିଛି ଫଳ ନ ପାଇ ତାଙ୍କପାଇଁ ଉଦ୍ଦିଷ୍ଟ ବିଛଣାରେ ଯାଇ ବାଧ୍ୟ ହୋଇ ଶୁଏ । ଆମେ ସବୁଦିନେ ଏକ ସମୟରେ ଖାଉ । ଦିନେ ଦିନେ ମୁଁ ଚଟାପଟ୍ ଖାଇଦେଇ ଯାଇ ମୋର ବିଛଣାରେ ଶୋଇପଡ଼େ ମୁହଁମାଡ଼ି । ଭାଇ ଖାଇସାରି ଆସି ମୋତେ ବିଛଣାରୁ ଉଠିବାକୁ କୁହନ୍ତି । ମୁଁ ଶୁଣେ ନାହିଁ ସେମିତି ପଡ଼ିଥାଏ । ତା'ପରେ ସେ ମୋ ହାତ ଧରି ଟାଣନ୍ତି । କିନ୍ତୁ ମୁଁ ଦୁଇ ହାତରେ ଦୁଇପାଖ ବାଡ଼ାକୁ ଧରି ରହିଥାଏ । ମୋର ସେ ହାତମୁଠା ଖୋଲିବାର ତାକତ୍ ତାଙ୍କର ନ ଥାଏ । ଏଣୁ ସେ ମୋର ଗୋଡ଼ପାଖ ଖଟିଆକୁ ଧରି ଟେକି ଦିଅନ୍ତି । କିନ୍ତୁ ମୁଁ ମୋର ପାଦ ଦୁଇଟା ଖଟ ଦଉଡ଼ିରେ hook କରି ଦେଇଥାଏ । ଏଣୁ ଖସି ପଡ଼େନା । ଏମିତି ଦି ଚାରି ଥର ଏପାଖ ସେପାଖ ଉଠାଇ ଉପାୟ ନ ପାଇ ଦୁଇ ଚାରି ବିଧା ଦେଇ ନିଜ ବିଛଣାରେ ଶୁଅନ୍ତି । ଅତ୍ୟାଚାର ଆହୁରି ଚାଲି ଥାଆନ୍ତା । କିନ୍ତୁ ବାବାଙ୍କୁ ଡର । ସେ ଖାଇସାରି ଆସି ଆମକୁ ଦେଖନ୍ତି ପ୍ରତିଦିନ । ଦିନେ ସେମିତି ଖଟକୁ ଏପାଖ ସେପାଖ କରିବା ପରେ ହଠାତ୍ ଖଟଟିକୁ ଓଲଟାଇ ଦେଲେ । ମୁଁ ତଳେ ରହିଲି ଖଟଟି ମୋ ଉପରେ ରହିଲା । ସେହି ଅବସ୍ଥାରେ ମୋତେ ମାଡ଼ି



Digitized by srujanika@gmail.com

ଲୋକମାନଙ୍କର ନିଦରୁ ଉଠିବା ଆଗରୁ ଘୋଡ଼ା ମୁହଁରୁ ସେ ଦଉଡ଼ିଟି ଖୋଲି, ଲଗାଅ ଛାଟ, ଘୋଡ଼ା ବିଚରା ସେ ମାଡ଼ ଛାଟରୁ ରକ୍ଷା ପାଇବାପାଇଁ ଦେ ଦୌଡ଼। ଏଟା ଖରାଦିନର ପ୍ରାୟ ନିତିଦିନିଆ ଖେଳ। ଦିନେ ଏମିତି ଖେଳ ସରିବାପରେ ଘୋଡ଼ାକୁ ଛାଟ ଲଗାଇ ଲଗାଇ, ତା ପଛରେ ଦଉଡ଼ିଲି। କିଛି ବାଟ ଯାଇ ସେ ଘୋଡ଼ା ଦେଲା ଗୋଟାଏ ନାତ, ବାଜିଲା ଠିକ୍ ମୋର ଛାତି ଓ ପେଟରେ, ଓଃ କି ଯେ କଷ୍ଟ! ମୋର ପ୍ରାଣ ଛାଡ଼ିଯିବା ପରି ଲାଗୁଥାଏ। ଭାଇ ଓ ଅନ୍ୟମାନେ ମୋତେ ଧରି ପକାଇ ଦେହ ମୁଣ୍ଡ ଆଉଁଶି ଦେଉଥା'ନ୍ତି। ମୁଁ ପ୍ରାଣପଣେ ନିଃଶ୍ୱାସ ବନ୍ଦ କରି ରହିଥାଏ। କିଛି କ୍ଷଣ ପରେ ନିଜକୁ ସମ୍ଭାଳି ନେଇ ଧୀରେ ଧୀରେ ଘରକୁ ଆସି ସେହି ବେଞ୍ଚରେ ଶୋଇଗଲି। ବୋଧହୁଏ ଦେଢ଼ଘଣ୍ଟା ଶୋଇଥିଲି। ଚାକର 'ମୁରା'ର ଡାକରେ ନିଦ ଭାଙ୍ଗିଲା। ଭାଇ କିନ୍ତୁ ସେତିକିବେଳୁ ଚମ୍ପଟ। ଘର ଭିତରକୁ ଯାଇ ଚୁପ୍ ଚାପ୍ ଶୋଇଥିଲେ। ସେ ଦିନର ସେ କଷ୍ଟ ଅନ୍ୟ କାହାରି ପକ୍ଷରେ ସହ୍ୟ କରିବାର ଶକ୍ତି ନ ଥିଲା। ଏବେ ମନେ ହୁଏ ମୋର ଅସୀମ ଶକ୍ତି ମୋତେ ସେଦିନ ବଞ୍ଚାଇ ଦେଇଥିଲା।

ଆଉ ଦିନେ ବେଞ୍ଚ ଉପରେ ଦୁଇ ଭାଇ ବସିଥାଉ, ଗୋଟିଏ ଲୋକ ଚାଳିଶ ପର୍ଯ୍ୟନ୍ତ ବଅସ ହେବ, ସେହି ବାଟେ ଯାଉଥାଏ। ମୋ ଭାଇ କହିଲେ ଯା'ତ ତାକୁ ଗୋଟାଏ ଚାପୁଡ଼ା ଲଗା। ମୁଁ ଚାଲିଯାଇ ତାକୁ ଠିଆ ହେବାପାଇଁ କହି କୁଆଡ଼େ ଯାଉଛ ପଚାରିଲି। ସେ ଯେମିତି ଠିଆ ହୋଇ ମୋତେ ଚାହିଁଲା, ମୁଁ ଆଚ୍ଛା କରି ତା' କାନମୂଳରେ ଗୋଟାଏ ଚାପୁଡ଼ା ଲଗାଇଲି। ସେ ବିଚରା ସେହି ଚାପୁଡ଼ାରେ ତଳେ ମୂର୍ଚ୍ଛା ହୋଇଗଲା। ଏହା ଦେଖି ମୁଁ ଫେରି ଆସି ଦେଖେ ତ ଭାଇ ଚମ୍ପଟ। ମୁଁ ଘର ଭିତରକୁ ଯାଇ ବାଲଟିଏ ପାଣି ଆଣି ତା'ମୁଣ୍ଡ ଓ ମୁହଁରେ ଛାଟିବାରୁ ସେ ଚେତା ପାଇ ଉଠି ବସିଲା ଓ ମୋତେ ତା' ଆଗରେ ଦେଖି ଉଠି ଯେତେଦୂର ପାରେ ଧାଇଁ ଚାଲିଗଲା। ପରେ ଭାବିଲି କାହିଁକି ମାରିଲି ? ସେହି ଦିନଠାରୁ ମୁଁ କାହାରିକୁ ଚାପୁଡ଼ା ମାରେ ନାହିଁ।

ସେତେବେଳେ ମୋ ବୟସ ନଅ/ଦଶବର୍ଷ। ସେ ସମୟରେ ଛୁଆଁ ଅଛୁଆଁଟା ଖୁବ୍ ବେଶୀ ମାତ୍ରାରେ ଥାଏ। ଏପରିକି ସ୍ତ୍ରୀ ଲୋକମାନଙ୍କର ପାଣି ମାଠିଆ ଲୋକ ଛୁଇଁ ଦେଉଥିଲେ ତାହା ମାରା ଓ ଅଶୁଦ୍ଧ ହୋଇଯାଏ। ଆମ ଘର ପାଖକୁ ପୂର୍ବ ଦିଗକୁ ଲାଗି ଗୋଟିଏ ବଡ଼ ପୋଖରୀ ଥାଏ। ଗାଆଁର ଝିଅବୋହୂମାନେ ଉପର ବେଳା ତହିଁରୁ ପାଣି ନିଅନ୍ତି, ରୋଷେଇ ଓ ପିଇବାପାଇଁ। ମୁଣ୍ଡରେ ଓ କାଖରେ କଳସୀମାନ ଧରି ଏକ ସମୟରେ ଦଶ/ବାରଜଣ ସାଥୀ ହୋଇ ଚାଲୁ ଥାଆନ୍ତି ଏବଂ ସେ ରାସ୍ତାଟି ଠିକ୍ ଆମ ଘର ସାମ୍ନାରେ। ରାସ୍ତାଧାରକୁ ସେହି ବଉଳ ଗଛ। ମୁଁ ଗଛ ଉପରେ ଥାଇ ବଉଳ କୋଳି ଖାଉଥାଏ, କି ମନେ ହୁଏ ହଠାତ୍ ଗଛରୁ ଓହ୍ଲାଇ ପଡ଼ି ସମସ୍ତଙ୍କୁ ଛୁଇଁ ଛୁଇଁ ଦେଇ ପଳାଏ। ସେମାନେ ଆମ ଘରକୁ ଆସି ମାଆ ନିକଟରେ କଳସୀମାନ ରଖିଦେଇ



Digitized by srujanika@gmail.com

ମୁଁ ଛୁଇଁ ଦେବା କଥା କହନ୍ତି । ମାଆ ପ୍ରତି କଳସୀପିଛା ଗୋଟିଏ ଲେଖା ତମ୍ବା ପଇସା ଦିଅନ୍ତି । ସେ ସମୟରେ ବଡ଼ କଳସୀ ଦାମ୍ ଏକ ପଇସା । ପରେ ମୋ କାନ ଧରି ବାବାଙ୍କ ନିକଟକୁ ନେଇ ଯାଇ ମୋ ବିରୁଦ୍ଧରେ ଆପତ୍ତି କରନ୍ତି । ବାବା କେବଳ କହନ୍ତି ଆଉ ସେମିତି ଛୁଇଁବୁ ନାହିଁ । କାନକୁ ଛାଡ଼ି ଦେଇ ପିଠିରେ ଗୋଟାଏ ଚାପୁଡ଼ା । ଏହି ସୁଆଙ୍ଗ ସପ୍ତାହରେ ତିନି/ଚାରିଦିନ ଚଳେ । ସେଥିପାଇଁ ବୋଧହୁଏ ବାବା ପାଣି ଆଣିବା ସମୟରେ ଟହଲ ମାରୁଥାନ୍ତି । ବାବା ବାହାରେ ଥିଲେ ମୁଁ ଘର ଭିତରେ ଥାଏ । ବାବାଙ୍କ ବ୍ୟତୀତ ମୋର ଆଉ କାହାରିକୁ ଭୟ ନ ଥାଏ ।

ହରିଦାସପୁର ଷ୍ଟେସନରେ ଗାଡ଼ି ବନ୍ଦ ହେଲା । ଚା' ବାଲାଠାରୁ ମାଟି ଖୁରାରେ ଚା' ଆଣି ପିଇଲି । ଚା' କି କଅଣ ଜାଣି ପାରିଲି ନାହିଁ, ଗରମ, ନାଲି ରଙ୍ଗ, ଟିକିଏ ମିଠା । ଯାହାହେଉ ଦୁଇ ଖୁରା ଚା' ପିଇ ୨୦ପଇସା ଦେଲି । ଟିକିଏ ସତେଜ ବି ଲାଗିଲା । ଟ୍ରେନ୍ ପୁଣି ଚାଲିଲା.... । ମନ ପୁଣି ପଛକୁ ଫେରିଗଲା । ମୁଁ ଶୁଣିଥିଲି ମୁଁ ଯେତେବେଳେ ପିଲା, ସେତେବେଳେ ରାତିରେ ମୋ ମୁଣ୍ଡ ପାଖରେ ଗୋଟିଏ ତାଟିଆରେ ଗୋଟିଏ ରସଗୋଲା ଓ ଦୁଧସର ରଖାଯାଏ । ରାତିରେ ନିଦ ଭାଙ୍ଗିଲେ ମୁଁ ଖାଏ । କିନ୍ତୁ ମୋ ଛୁଆଙ୍କୁ ତାହା ଦେଇପାରିନି, ସେମାନେ ତାହା ଚାହିଁ ନାହାନ୍ତି । ମାଇନର ସ୍କୁଲରେ ପଢ଼ିବା ସମୟରେ ଆମେ ଦୁଇ ଭାଇ (ମୁଁ ଓ ମୋ ଉପର ଭାଇ) ଖରାଦିନେ ଅଗଣାରେ ଦୁଇଟି ଅଲଗା ଅଲଗା ଖଟିଆରେ ଶୋଉ । ମୁଁ ଯେଉଁ ଖଟିଆରେ ଶୁଏ ତାହା ଟିକିଏ ଲମ୍ବା ଓ ତାକୁ ମୁଁ ପଛ ଦଉଡ଼ି ଟାଣି ଖଟ ଦଉଡ଼ିକୁ ସ୍ପ୍ରିଂ ଭଳି ଟାଣ କରିଥାଏ । ମୋ ବଡ଼ ଭାଇ ଛୁଟିରେ ଘରକୁ ଆସିଲେ ତାଙ୍କପାଇଁ ମଧ୍ୟ ଗୋଟିଏ ଖଟିଆ ବିଛଣା ହୁଏ । କିନ୍ତୁ ମୋ ଖଟିଆ ପରି ତାହା ସେତେ ଟାଣ ନୁହେଁ । ସେଥିପାଇଁ ଭାଇ ଶୀଘ୍ର ଖାଇସାରି ମୋ ବିଛଣାରେ ଶୋଇପଡ଼ନ୍ତି । ମୁଁ ମାଆଙ୍କୁ ଆପତ୍ତି କରି କିଛି ଫଳ ନ ପାଇ ତାଙ୍କପାଇଁ ଉଦ୍ଦିଷ୍ଟ ବିଛଣାରେ ଯାଇ ବାଧ ହୋଇ ଶୁଏ । ଆମେ ସବୁଦିନେ ଏକ ସମୟରେ ଖାଉ । ଦିନେ ଦିନେ ମୁଁ ଚଟାପଟ୍ ଖାଇଦେଇ ଯାଇ ମୋର ବିଛଣାରେ ଶୋଇପଡ଼େ ମୁହଁମାଡ଼ି । ଭାଇ ଖାଇସାରି ଆସି ମୋତେ ବିଛଣାରୁ ଉଠିବାକୁ କୁହନ୍ତି । ମୁଁ ଶୁଣେ ନାହିଁ ସେମିତି ପଡ଼ିଥାଏ । ତା'ପରେ ସେ ମୋ ହାତ ଧରି ଟାଣନ୍ତି । କିନ୍ତୁ ମୁଁ ଦୁଇ ହାତରେ ଦୁଇପାଖ ବାଡ଼ାକୁ ଧରି ରହିଥାଏ । ମୋର ସେ ହାତମୁଠା ଖୋଲିବାର ତାକତ୍ ତାଙ୍କର ନ ଥାଏ । ଏଣୁ ସେ ମୋର ଗୋଡ଼ପାଖ ଖଟିଆକୁ ଧରି ଟେକି ଦିଅନ୍ତି । କିନ୍ତୁ ମୁଁ ମୋର ପାଦ ଦୁଇଟା ଖଟ ଦଉଡ଼ିରେ hook କରି ଦେଇଥାଏ । ଏଣୁ ଖସି ପଡ଼େନା । ଏମିତି ଦି ଚାରି ଥର ଏପାଖ ସେପାଖ ଉଠାଇ ଉପାୟ ନ ପାଇ ଦୁଇ ଚାରି ବିଧା ଦେଇ ନିଜ ବିଛଣାରେ ଶୁଅନ୍ତି । ଅତ୍ୟାଚାର ଆହୁରି ଚାଲି ଥାଆନ୍ତା । କିନ୍ତୁ ବାବାଙ୍କୁ ଡର । ସେ ଖାଇସାରି ଆସି ଆମକୁ ଦେଖନ୍ତି ପ୍ରତିଦିନ । ଦିନେ ସେମିତି ଖଟକୁ ଏପାଖ ସେପାଖ କରିବା ପରେ ହଠାତ୍ ଖଟଟିକୁ ଓଲଟାଇ ଦେଲେ । ମୁଁ ତଳେ ରହିଲି ଖଟଟି ମୋ ଉପରେ ରହିଲା । ସେହି ଅବସ୍ଥାରେ ମୋତେ ମାଡ଼ି



Digitized by srujanika@gmail.com

ବସିଲେ । ତା'ପରେ କଅଣ ହୋଇଥାଆନ୍ତା କେଜାଣି ହଠାତ୍ ବାବା ସେ ଅଗଣାକୁ ପଶି ଆସି ଏ ଅବସ୍ଥା ଦେଖି ଭାଇଙ୍କୁ ଗୋଟାଏ ଗମ୍ଭୀର କଣ୍ଠରେ ଡାକିଦେଲେ । ସେ ମୋତେ ଛାଡ଼ିଦେଇ ମୋର ଖଟ ନ ଛାଡ଼ିବା କଥା କହିଲେ । ବାବା ଆସି କିଛି ନ କହି ସେଦିନ ମୋତେ ନେଇ ତାଙ୍କ ପାଖରେ ଶୁଆଇଲେ । ଏହା ଗୋଟାଏ ଆଶ୍ଚର୍ଯ୍ୟ କଥା । ବାବାଙ୍କ ପାଖରେ କେବେ କେହି ଶୁଅନ୍ତି ନାହିଁ। କାରଣ ତାଙ୍କ ଦେହରେ ହାତ ବାଜିଗଲେ ସେ ହଠାତ୍ ଚମକି ଉଠନ୍ତି ବା ଶୋଇବା ଅବସ୍ଥାରେ କେହି ତାଙ୍କୁ ହଠାତ୍ ଡାକି ଦେଲେ ଚମକି ଉଠି ଠୋ'କରି ଚାପୁଡ଼ାଟିଏ ମାରନ୍ତି । ଏଣୁ ତାଙ୍କ ଖଟରେ ମୁଁ ଶୋଇବା ମାନେ ମୋତେ ଗୋଟାଏ ଦଣ୍ଡ । ଯାହାହେଉ କିଛି କ୍ଷଣ ପରେ ମାଆ ଓ ଆଉ ଛୁଆମାନେ ଶୋଇଥିବା ଖଟକୁ ଯାଇ ଶୋଇଲି ।

ଆଉ ଗୋଟିଏ ଘଟଣା । ଆମ ଘରେ କେତେଗୁଡ଼ିଏ ରାଜହଂସ ଥାଆନ୍ତି । ସେ ସମୟରେ କୁକୁଡ଼ା ବା ଅଣ୍ଡା ବ୍ରାହ୍ମଣ କରଣ ଘରେ ଖାଇବାକୁ ମନା । ହଂସ ଘରୁ ପ୍ରତିଦିନ ପାଞ୍ଚ/ଛଅଟା କରି ଅଣ୍ଡା ବାହାରେ । ମୋ କାମ ମୁଁ ପ୍ରତିଦିନ ହଂସଘରେ ପଶି ସେ ସବୁ ବାହାର କରେ । ବାବା ମୋର ମାଛ ବ୍ୟତୀତ ମାଂସ କି ଅଣ୍ଡା ଖାଉ ନ ଥିଲେ । ଭାଇ ଘରେ ନ ଥିଲେ ଆମେ ଛୁଆସବୁ ପ୍ରତିଦିନ ଅଣ୍ଡା ଭଜା ଖାଉ । ଭାଇ ଛୁଟିରେ ଘରକୁ ଆସିଲେ ମାଆ ଚାରି/ପାଞ୍ଚଟା ଅଣ୍ଡା ଭାଙ୍ଗି ଗୋଟାଏ ପିଠା କରି ଦିଅନ୍ତି ଓ ତହିଁରେ ଚାରିଆଡ଼ୁ ପତଳା ଓ ଧଳା ଅଂଶ କାଟି ଆମକୁ ଦିଅନ୍ତି । ଆଉ କିଏ ଖାଏ କି ନ ଖାଏ ମୁଁ ଜାଣେ ନାହିଁ । କିନ୍ତୁ ମୁଁ ଜଗି ବସିଥାଏ । ମୋ ଭାଗରେ ସେ ଚାରିପାଖରୁ କିଛି ପଡ଼େ, ଅବଶ୍ୟ ଟିକିଏ ବେଶୀ । ବାକି ମଝିଟା ଭାଇଙ୍କ ଥାଳିଆରେ ଯାଏ । ଏ ସବୁ ଦେଖି ଦେଖି ଦିନେ ଶୀତ ଦିନ ଦ୍ୱିପ୍ରହରରେ ଚୁପ୍ କରି ବିଛଣାରୁ ଉଠିଲି । ମୋ ତଳ ଭାଇ ଓ ତଳ ଭଉଣୀକୁ ଉଠାଇଲି । ସେହି ଘର କାନ୍ଥକୁ ଲାଗି ଗୋଟାଏ କାଠର ଥାକ ଥାଏ । ତା' ଉପରେ ଗୋଟାଏ ଟୋକେଇରେ ପ୍ରାୟ ୨୦ଟା ଅଣ୍ଡା ଥାଏ । ଗୋଟାଏ ଟୁଲ୍ ପକାଇ ତା'ଉପରେ ଚଢ଼ି ସେ ଟୋକେଇରୁ ସବୁ ଅଣ୍ଡା ଲୁଗାରେ ଧରି ସାନଭାଇ ଓ ସାନ ଭଉଣୀକୁ ନେଇ ବାଡ଼ି ପଟକୁ ଗଲି । ସେମାନଙ୍କ ସାହାଯ୍ୟରେ ଗୋଟାଏ କଡ଼ାଇ, ତେଲ, ଲୁଣ ଆଣି, ବାଡ଼ିରେ ଇଟା ଦେଇ ଗୋଟାଏ ଚୁଲା କରି ସବୁ ଅଣ୍ଡା ଭାଙ୍ଗି ଗୋଟାଏ ପ୍ରକାଣ୍ଡ ପିଠା କଲି । ସାନ ଦୁଇଜଣଙ୍କୁ ପିଠାରୁ ପାଏ ଅନ୍ଦାଜ ଦେଲି । ବାକି ସମସ୍ତ ଗର୍ଭସାତ୍ କରିଦେଇ ଚୁଲି ଲିଭାଇ ଲୁଣ, ତେଲ କଡ଼େଇ ଯଥା ସ୍ଥାନରେ ରଖି ପୁଣି ଆସି ଶୋଇଲି । ସେମାନଙ୍କୁ ଏ ବିଷୟରେ କାହାରିକୁ ନ କହିବାପାଇଁ ଖୁବ୍ ତାଗିଦ୍ କରିଦେଲି । ବେଳ ହେଲା, ସମସ୍ତେ ଉଠିଲେ । ଭାଇ ପାଇଖାନା ଗଲେ । ମାଆ ଅଣ୍ଡା ଭାଜିବାପାଇଁ ଆସି ଟୁଲ୍‌ରେ ଚଢ଼ି ଟୋକେଇକୁ ଧରି ଓହ୍ଲାଇ ଦେଖେ ତ କିଛି ନାହିଁ । 'ଲୋ ଅଣ୍ଡା ଏତେ ଥିଲା କୁଆଡ଼େ ଗଲା ।' କହି ଚାକରଠୁ ଆରମ୍ଭ କରି ଛୁଆଙ୍କୁ ପଚାରିଲା । ମୁଁ ସେତେବେଳେ ବାବାଙ୍କ ପାଖରେ ବଉଳ ଗଛ ମୂଳରେ । କେହି ତ କିଛି ଜାଣନ୍ତି ନି । କିନ୍ତୁ ସେ



Digitized by srujanika@gmail.com

ସାନଭାଇଟା ଅବିଶ୍ୱାସୀ କାମ କଲା । ସବୁ କୀର୍ତ୍ତି କହିଦେଲା । ଭାଇ ଆସି ସବୁ ଶୁଣିଲେ । ଡକାଅ ବାୟାଙ୍କୁ । ('ବାୟା' ମୋର ଶ୍ରଦ୍ଧାନାମ ।) ମୁଁ କିନ୍ତୁ ବାବାଙ୍କ ପାଖେ ପାଖେ ଥାଏ । ଗୋଟିକ ପରେ ଗୋଟିଏ ଲୋକ ଆସି ଭାଇ ଡାକିବା କଥା କହୁଥାନ୍ତି । କିନ୍ତୁ ମୁଁ ଶୁଣି ନ ଶୁଣିଲା ପରି ଚୁପ୍ ହେଇ ରହୁଥାଏ । ବାବା ଟିକିଏ କାଲ, ଜୋର୍‌ରେ ନ କହିଲେ ଶୁଣି ପାରନ୍ତି ନାହିଁ । କିନ୍ତୁ ଅନୁମାନ କରି ସବୁ ଜାଣି ପାରନ୍ତି । ଆଶ୍ଚର୍ଯ୍ୟ ଥିଲା ତାଙ୍କର ଅନୁମାନ ଓ ଅନୁଭବ ଶକ୍ତି । ଯାହାହେଉ ସେ କିଛି ସନ୍ଦେହ କରି ମୋତେ ସାଥିରେ ନେଇ ଘର ଭିତରକୁ ଗଲେ । ମୋ ସାଥିରେ ବାବାଙ୍କୁ ଦେଖି ଭାଇଙ୍କର ସେ ଉଦ୍ୟତ ଫଣା ନଇଁ ପଡ଼ିଲା । କିନ୍ତୁ ମାଆ ଖୁବ୍ ବ୍ୟସ୍ତହୋଇ ଏ ଅଣ୍ଡାଖିଆ ଘଟଣା କହି ମୁଁ ଛୁଆଙ୍କୁ ଇଚ୍ଛୁଣି କଅଣ ଦେବି ବୋଲି କହିଲା । ଏ କଥା ଶୁଣି ବାବାଙ୍କର ସେ ଯେ ହସ । ହସି ହସି କହିଲେ ହଉ, ସେ ସବୁ ଦିନର ଖାଇନେଲା । ପ୍ରତିଦିନ ଟିକିଏ ଟିକିଏ ନ ଖାଇ ଏକାଦିନେ ଖାଇଦେଲା । ହଉ ପୁଅପାଇଁ ଚାକରକୁ ପଠାଇ କିଛି ମିଠା ଆଣିଦିଅ । ପରଟା କିମ୍ବା ଲୁଚି କରିଦିଅ । ଓଳିଏ ଅଣ୍ଡା ନ ଖାଇଲେ କଣ ହେଲା ? ମୁଁ କଣେଇ ଭାଇଙ୍କ ମୁହଁକୁ ଚାହିଁ ଦେଖିଲି, ଆଖି ଦୁଇଟା ବାଘ ଆଖିପରି ଜଳୁଛି । ଯାହାହେଉ ଦାଣ୍ଡକୁ ପଳାଇ ଆସି ସେ ବିପତ୍ତିରୁ ବଞ୍ଚିଲି ।

ଏ କଥା ମନେ ପଡ଼ି ହଠାତ୍ ହସି ପକାଇଲି । ମୋ ସାମ୍‌ନାରେ ଜଣେ ଭଦ୍ରଲୋକ ସସ୍ତ୍ରୀକ ବସିଥାନ୍ତି । ସେ ମୋ ହସ ଶୁଣି ଚମକି ପଡ଼ି ମୋ ଆଡ଼କୁ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ । ମୁଁ ଶୋଇ ନାହିଁ ଅଥଚ ହସୁଛି । ସେ ମୋ ଆଡ଼କୁ ଓ ତାଙ୍କ ସ୍ତ୍ରୀ ଆଡ଼କୁ ଚାହିଁଲେ । ତାଙ୍କ ସ୍ତ୍ରୀ ବିଛଣାରେ କେତେବେଳୁ ଶୋଇଛନ୍ତି, ଛୁଆଟି ମଧ୍ୟ । ମୁଁ ଟିକିଏ ଲଜ୍ଜିତ ହୋଇ ପିଲାଦିନର ଦୁଷ୍ଟାମି ମନେ ପଡ଼ିଲାରୁ ହସି ପକାଇଲି ବୋଲି କହିଲି । ସେ ଭଦ୍ରଲୋକ ଟିକିଏ ଗପୁଡ଼ି, ମୋର ଚୁପ୍ ଚାପ୍ ଢଙ୍ଗ ଦେଖି ସେ ବାଧ ହୋଇ ଚୁପ୍ ହୋଇ ବସିଥିଲେ । ବର୍ତ୍ତମାନ ସୁବିଧା ମିଳିଲା ତାଙ୍କୁ । ଆରମ୍ଭ କଲେ ଗପ । ନାନା କଥା, ପିଲାଙ୍କ କଥାଠାରୁ ଆରମ୍ଭ କରି ଆଜିକାଲି ରାଜନୀତି କଥା । ତାଙ୍କ କଥା ମଝିରେ ସେ ଆକ୍ରମଣ କଲେ ଆଜିକାଲିର ଝିଅ ପୁଅଙ୍କୁ । ଚିପା ପ୍ୟାଣ୍ଟ ଓ ଗୋଜିଆ ଜୋତା । ଅଣ୍ଟା ତଳକୁ ପ୍ୟାଣ୍ଟ ପିନ୍ଧା । ଏଥିରେ ଯେ ପୁଅମାନଙ୍କୁ କେତେ ଖରାପ ଦେଖାଯାଏ ତାହା ବୋଧହୁଏ ସେମାନେ ବୁଝି ନାହାନ୍ତି । କେବଳ ବିଦେଶୀଙ୍କୁ ଅନୁକରଣ କରିବା ହିଁ ବୋଧହୁଏ ତାଙ୍କ ଶିକ୍ଷା ବା ସଭ୍ୟତା । ବିଶେଷ କରି ସେ ଝିଅଙ୍କର ପୋଷାକ କଥା କହିଲେ । ଏଇ ଯେଉଁ ନାଭିଦେଶର ତଳକୁ ଡ୍ରେସ/ଶାଢ଼ି ପିନ୍ଧି ଗୋଟାଏ ବ୍ରାସେରି ଆକାରର ବ୍ଲାଉଜ ପିନ୍ଧୁଛନ୍ତି ତଦ୍ୱାରା ସେମାନେ କି ଉପକାର ପାଉଛନ୍ତି । ନିଜକୁ ଯେତେ ଦୂର ପାରୁଛନ୍ତି ଉଲଗ୍ନ କରୁଛନ୍ତି ସିନା ! ଏହିପରି ଅନେକ କିଛି କହିଲେ, ମୋର ତାଙ୍କୁ ଆଉ କିଛି କହିବାର ନ ଥିଲା । କେବଳ ଏତିକି କହିଲି ଏଥିରେ କାହାକୁ କିଛି କହିବାର ନାହିଁ । କହିଲେ ମଧ୍ୟ କିଛି ଫଳ ହେବ ନାହିଁ । ବନ୍ଧ ଭାଙ୍ଗିଯାଇଛି । ସେ ବିଶାଳ ବେଗକୁ ସମ୍ଭାଳିବାକୁ ଗଲେ କେବଳ ଭାସି ଯିବା ହିଁ ସାର ହେବ । ବରଂ ତାଳ ସଙ୍ଗେ ତାଳ



Digitized by srujanika@gmail.com

ମିଶାଇ ଯୋଗ ଦେବା ଓ ଯେତିକି ପାରିବା ବୁଝାଇବା ହିଁ ଶ୍ରେୟ । ସେଇ ବେଗକୁ ନିୟମାବଦ୍ଧ କରିବାକୁ ଚେଷ୍ଟା କରିବା । ସେ ଭଦ୍ରଲୋକ ବିଚରା ମନେହେଲା ଯେମିତି ମୋର ସହିତ ଏକମତ ହୋଇ ପାରିଲେ ନାହିଁ । ପୁଣି ଆରମ୍ଭ କଲେ ନାନା କଥା । ତାଙ୍କ ପିଲାବେଳ ସ୍କୁଲବେଳ କଥା ଆରମ୍ଭ କଲେ ସେ । ମୁଁ କିନ୍ତୁ ଚୁପ୍‌ଚାପ୍ ଚାହିଁ ରହିଲି । ମୋର ନୀରବତା ଦେଖି ସେ ମଧ୍ୟ ଚୁପ୍ ହୋଇଗଲେ । ମନେ ମନେ ଭାବୁଥାଏ ଆମ ପିଲା ବୟସ କଥା । ଗାଁ ସ୍କୁଲରୁ ପଢ଼ିସାରି ବାରିପଦା ଆସିଲୁ ମୁଁ ଓ ମୋର ଉପର ଭାଇ ମେଟ୍ରିକ ପଢ଼ିବାପାଇଁ । ନାମ ଲେଖା ହେଲା, କିନ୍ତୁ ହଷ୍ଟେଲରେ ସିଟ୍ ପାଇଲୁ ନାହିଁ । ସେ ପର୍ଯ୍ୟନ୍ତ ଆମ୍ଭେମାନେ ସେଠାରେ ବିଦେଶୀ ବୋଲି ଗଣା ହେଉଥିଲୁ । କାରଣ ମୋ ବାବାଙ୍କ ଜନ୍ମସ୍ଥାନ ଭଦ୍ରଖ(ସାହାପୁର), ମୟୂରଭଞ୍ଜ ଜିଲ୍ଲା କରଞ୍ଜିଆକୁ ଆସି ଆଇନ୍ ବ୍ୟବସାୟ କରୁଥିଲେ । ମୋ ବଡ଼ବାପା ପାଞ୍ଚପିଢ଼ି ବାମନଘାଟିର P.W.D.S.D.O.ଥିଲେ । ଆମେ ବାରିପଦାରେ ପଢ଼ିଲାବେଳକୁ ସେ ରିଟାୟାର କରି ଭଦ୍ରଖ ଯାଇ ସାରିଥାନ୍ତି । ହଷ୍ଟେଲରେ ଜାଗା ନ ପାଇ ଗୋଟିଏ ମେସ୍‌ରେ ଦୁଇ ତିନିମାସ ରହିବା ପରେ ବଡ଼ବାପା ବାରିପଦା ଆସି ମହାରାଜାଙ୍କୁ ଭେଟି ଏ ବିଷୟରେ କହିବାରୁ ସେ ଓ ଆମେ ଦୁଇଭାଇ ହଷ୍ଟେଲରେ ଆସି ରହିଲୁ ।

ପ୍ରଥମ ବର୍ଷ ଗଲା ପରେ ବାବା ଆମକୁ କଲେଜିଏଟ୍ ସ୍କୁଲ ନେଇଗଲେ । ଆମେ ରହିଲୁ ସ୍କୁଲର ଆରପଟେ ଥିବା କାଠଯୋଡ଼ି ହଷ୍ଟେଲରେ । ସେଠାରେ ସବୁ ସ୍କୁଲର ପିଲା ରହିପାରିବାର ବ୍ୟବସ୍ଥା ଥାଏ । ହଷ୍ଟେଲରେ ଜଣେ ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ଥାଆନ୍ତି । ବର୍ତ୍ତମାନ ବି ତାଙ୍କର ନାମ ମନେଅଛି 'ଗୌରାଙ୍ଗ ବାବୁ' । ସୁପରିଣ୍ଟେଣ୍ଡେଣ୍ଟ ଥାଆନ୍ତି ଜଣେ ବୃଦ୍ଧ, ନାମ ରାଧାକୃଷ୍ଣ ବାବୁ । କଟକର ଯେତେଗୁଡ଼ିଏ ମେସ୍ ସବୁଥିରେ ସେ ସୁପରିଣ୍ଟେଣ୍ଡେଣ୍ଟ । ସେ ବାବାଙ୍କ ଅନୁରୋଧରେ ଆମର ଲୋକାଲ ଗାର୍ଡ଼ିଆନ ହୋଇ ରହିଲେ । ଏଥିପାଇଁ ସେ ଆମର ପଢ଼ାପଢ଼ି ଭଲମନ୍ଦ ସବୁ ବୁଝାବୁଝି କରୁଥିଲେ । ସେଠାରେ ରହିବାର ପ୍ରାୟ ଛଅ ମାସ ପରେ ମୋର ଭାଇଙ୍କର ନାକରୁ ଭୀଷଣଭାବେ ରକ୍ତ ପଡ଼ିବାକୁ ଆରମ୍ଭକଲାରୁ ଡାକ୍ତରଙ୍କ ପରାମର୍ଶରେ ସେ ଘରକୁ ଫେରିଗଲେ ଓ ମୁଁ ଏକାଏକା ସେଠାରେ ରହିଲି । ଉକ୍ତ ହଷ୍ଟେଲରେ ଜଣେ ମେସ୍ ମେନେଜର ଥାଏ । ସେ ପ୍ରତିଦିନ ମୋଟରେ ଥିବା ଛଅଜଣ ମେମ୍ବରଙ୍କଠାରୁ ଅପରାହ୍ଣ ୫ଟା ବେଳେ ପ୍ରତ୍ୟେକଙ୍କଠାରୁ ତିନିଅଣା ଛ ପାହୁଲା ଆଦାୟ କରି ନିଅନ୍ତି । ଏହା ରାତି ଓ ସକାଳର ଖାଇବା ଖର୍ଚ୍ଚ । ଯେ ନ ଦିଏ ତାହାର ଖାଇବା ବନ୍ଦୋବସ୍ତ ହୁଏ ନାହିଁ । ଏଣୁ ମାସରେ ଛ ଟଙ୍କା ଆଠଅଣା ଖାଇବା ଖର୍ଚ୍ଚ ପଡ଼େ । ସାଧାରଣ ପିଲାଙ୍କର ୧୦ଟଙ୍କା ହେଲେ ସେମାନଙ୍କର ଗୋଟିଏ ମାସ ଚଳିଯାଏ । ଟିକିଏ ବଡ଼ଘର ପିଲାଙ୍କର ୧୫ଟଙ୍କା ପଡ଼େ । କିନ୍ତୁ ମୋର ପ୍ରତି ମାସ ୫୦ଟଙ୍କା ମନି ଅର୍ଡ଼ର ସେହି ରାଧାକୃଷ୍ଣ ବାବୁଙ୍କର ନାମରେ ଆସେ । ସେ ମୋତେ ଟଙ୍କା ଦେଇଦିଅନ୍ତି । ଏହି ଟଙ୍କା ଆସିବାର ଦେଖି ସେଠାରେ ସମସ୍ତେ ମୋତେ ଖୁବ୍ ଉଚ୍ଚ ଆଖିରେ ଦେଖନ୍ତି ।



Digitized by srujanika@gmail.com

ଆମ ହଷ୍ଟେଲରେ ସେ ସମୟରେ ନରସିଂହପୁରର ଯୁବରାଜ ଶ୍ରୀ ଅନନ୍ତ ନାରାୟଣ ମାନସିଂହ ହରିଚନ୍ଦନ ମହାପାତ୍ର ତଳ ମହଲାର ଦକ୍ଷିଣ ଦିଗରେ ଶେଷ ଦୁଇଟି କୋଠରି ନେଇ ଥାଆନ୍ତି । ତାଙ୍କ ସହ ଜଣେ Guardian Tutor, ଜଣେ ପୁଝାରୀ, ଜଣେ ଚାକର ଥାଆନ୍ତି । ସେ ଭିକ୍ଟୋରିଆ (ବର୍ତ୍ତମାନର ଭକ୍ତମଧୁ ବିଦ୍ୟାପୀଠ)ସ୍କୁଲରେ ଅଷ୍ଟମରେ ପଢୁଥିଲେ । ସେହି ହତା ମଧ୍ୟରେ ଅଲଗା ରୋଷେଇଘର ଓ ଅନ୍ୟ କିଛି କାମପାଇଁ ଚାରୋଟି କୋଠରି ଥାଏ । ପାଇଖାନା ମଧ୍ୟ ଥାଏ । ଉତ୍ତର ଦିଗ ଶେଷ କୋଠରି ଦୁଇଟିରେ ପାରିକୁଦ ଜମିଦାରଙ୍କର ଯୁବରାଜ, ପ୍ରାୟ ବାରବର୍ଷର, ସେହି ବୟସରେ ଜଣେ ପିଲା ଯେ କି ତାଙ୍କ Guardian Tutorଙ୍କର ପୁତ୍ର, ପୁଝାରୀ ଓ ଚାକର ଥାଆନ୍ତି । ସେମାନେ କଲେଜିଏଟ୍ ସ୍କୁଲରେ ମାଇନର୍ କ୍ଲାସରେ ପଢୁଥାଆନ୍ତି । ମୋର ନରସିଂହପୁର ଯୁବରାଜଙ୍କ ସହ ଖୁବ୍ ଆନ୍ତରିକତା ଥାଏ । ମୋର ସେ ସମୟରେ ତିରିଶିଖଣ୍ଡ ଧୋତି ଓ ତିରିଶି ଖଣ୍ଡ କମିଜ ଥାଏ । ଆଜି ଯାହା ପିନ୍ଧିଥାଏ କାଲିକୁ ପିନ୍ଧେ ନାହିଁ । ହଷ୍ଟେଲ ଦରଓ୍ୱାନ୍ ମୋର ସବୁ କାମ କରେ । ସେଥିପାଇଁ ସେ ମୋଠାରୁ ମାସିକ ଦୁଇ ଟଙ୍କା ଦରମା ନେଇ ଭାରି ଖୁସିଥାଏ । ସେ ମୋର ଗାଧୁଆ ପରେ ଲୁଗା ଧୋଇ ଶୁଖାଇବା, ତାକୁ ବାନ୍ଧି ଧୋବାଘରେ ଦେବା, ବିଛଣା ବିଛାଇବା ଆଦି ସମସ୍ତ କାମ କରିଦିଏ । ସେତେବେଳେ ମୁଁ ଗଞ୍ଜାମି ଆଠହାତ ଧୋତି ଜରିପକା ଓ ନାନା ରକମ ପାଟ ଧୋତି ପିନ୍ଧୁଥିଲି । ଚାନ୍ଦିନିଚୌକ ବଜାରରେ ଅପନ୍ନା ବୋଲି ଜଣେ ଦୋକାନୀ ଥାଏ । ସେ ମୋତେ ସେହି ଧୋତି ସବୁ ଯୋଗାଏ । ମୋର ଯାହା କିଛି ପ୍ରୟୋଜନ ସବୁ ତାହାରି ଦୋକାନରୁ ଆସେ । ମୋ ଦେଖାଦେଖି ନରସିଂହପୁର ଯୁବରାଜଙ୍କ ମଧ୍ୟ ସବୁ ଜିନିଷ ଓ ଅନ୍ୟାନ୍ୟ କେତେକ ବନ୍ଧୁଙ୍କର ଜିନିଷ ସେଠାରୁ ଆସେ । ସେଥିପାଇଁ ଅପନ୍ନା ମୋତେ ଭାରି ଖାତିର କରେ ।

ସନ୍ଧ୍ୟା ହେଲେ ସମସ୍ତେ ଆଲୁଅ ଜାଳି ପଢ଼ନ୍ତି । ମୋ ଟେବୁଲ ଉପରେ ମଧ୍ୟ ଦରଓ୍ୱାନ ମୋର ବଡ଼ ଆଲାଦିନ ଲ୍ୟାମ୍ପ ଜାଳି ଦେଇଥାଏ । ମୁଁ କିନ୍ତୁ ଟେବୁଲ ପାଖରେ ବସେ ନାହିଁ । ଯା, ତା ପାଖରେ ଯାଇ ଗପ କରେ । ସେଥିପାଇଁ ମୁଁ ଓ ମୋର ସାଙ୍ଗ ସମୟ ସମୟରେ ଗୌରାଙ୍ଗ ବାବୁଙ୍କଠାରୁ ଗାଳି ମଧ୍ୟ ଖାଉ । କିନ୍ତୁ ପ୍ରକୃତି ନୈବ ମୁଚ୍ୟତେ । ଏପରିକି ସୁପରିଣ୍ଟେଣ୍ଡେଣ୍ଟ ରାଧାକୃଷ୍ଣ ବାବୁ ଦିନେ ଦିନେ ଆସି ମୋତେ ଧରିନେଇ ମୋ ଟେବୁଲରେ କିଛି ସମୟ ପଢ଼ାନ୍ତି । ମୋର ଗୋଟିଏ ଭଲ ଅଭ୍ୟାସ ଥିଲା ଯେ ମୁଁ କ୍ଲାସରେ ଶିକ୍ଷକଙ୍କ ପ୍ରତ୍ୟେକ କଥା ଶୁଣେ ଓ ନୋଟ୍ କରି ନିଏ । ସେ ସମୟରେ ଶିକ୍ଷକମାନେ ଯେ କି ଆଗ୍ରହ ସହକାରେ ପ୍ରତ୍ୟେକ ପିଲାଙ୍କର ସନ୍ଦେହ ମୋଚନ କରାନ୍ତି ଓ ପିଲାମାନେ ସବୁ ବୁଝି ମନେ ରଖି ପାରିବେ ସେଥିପାଇଁ କେତେ ପରିଶ୍ରମ କରନ୍ତି, ତାହା ସେହି ଛାତ୍ରମାନେ ହିଁ ବୁଝିଥିବେ ଯେଉଁମାନେ ସେମାନଙ୍କ ନିକଟରେ ପଢ଼ିଛନ୍ତି । ଆଜିକାଲି ଶିକ୍ଷକର ଶିକ୍ଷକତା ଗୋଟିଏ ବ୍ୟବସାୟ । ତେଣୁ ଶିକ୍ଷାର ଅଧୋଗତି । ଖାଲି ଶିକ୍ଷକଙ୍କୁ



Digitized by srujanika@gmail.com

ଦୋଷ ଦେଇ ଫଳ ନାହିଁ, ଛାତ୍ରଙ୍କର ଗୁଣ କହିଲେ ନ ସରେ । ଆଜିକାଲି ଛାତ୍ରଙ୍କର ପଢ଼ାପଢ଼ି ଗୋଟାଏ ସଉକ ଓ ଗୋଟିଏ ଲାଇସେନ୍ସ ପାଇବାର ଫନ୍ଦି, 'ଯେ ସେମାନେ ଛାତ୍ର ।' ପରୀକ୍ଷାରେ ଫେଲ୍ ହେଲେ ଦାବି ପାଶ୍ କରାଇ ଦିଅ । କପି କରିବେ, ବାଧାଦେଲେ ଛୁରା ଦେଖାଇବେ । ବାହାରେ କୌଣସି ଅପରାଧ କଲେ ଦାବି ତାଙ୍କୁ ଛାଡ଼ିଦିଅ । ମୋକଦମା ଉଠାଇ ନିଅ । ଏହା କେବଳ ଛାତ୍ରଙ୍କର ଦାବି ନୁହେଁ ତାଙ୍କ ପିତାମାତାଙ୍କର ମଧ୍ୟ । ଏହାଦ୍ୱାରା ଛାତ୍ରସମାଜ ଯେ କେଉଁ ପରିସର ମଧ୍ୟରେ ଗତିକରୁଛନ୍ତି ତାହା ଭାବିଲେ ହୃତ୍‌କମ୍ପ ହୁଏ । ଦେଶ କାହା ଉପରେ ନିର୍ଭର କରି ଆଗେଇବ ?

ମୋ ପିଲାଦିନର କଥା ଭାବୁ ଭାବୁ ଆସି ମୋ ନାତିଙ୍କର ପିଲାଦିନର କଥା ଭାବିଲିଣି । ଛାଡ଼.... । ସନ୍ଧ୍ୟା ସାତଟା ପର୍ଯ୍ୟନ୍ତ ନାନା ପ୍ରକାର ଖେଳରେ ମାତିଥାଏ । ରାତିରେ କେବେ କେବେ କାଲିକା ବହିଟା ଖୋଲି ଦେଖେ ଯାହା ନୋଟ୍ କରିଥାଏ ଆଖି ବୁଲାଇ ଦିଏ । ଖୁବ୍ ବେଶୀ ହେଲେ ଆସନ୍ତା କାଲିକୁ ଯାହା ପଢ଼ାହେବ ସେଇଆକୁ ଦେଖିନିଏ । ଶିକ୍ଷକ ଜଣେ ତୂଳିକାର, ମାଆ ବାପା ମାଟି ଚକଟି ସେଥିରୁ ଗୋଡ଼ି ମାଟି ବାହାର କରି ତାଙ୍କ ମନଇଚ୍ଛା ପିତୁଳାଟିଏ ଗଢ଼ି ଶିକ୍ଷକଙ୍କୁ ଦିଅନ୍ତି । ଶିକ୍ଷକମାନେ ସ୍ତର ଅନୁସାରେ ସେଥିରେ ତାଙ୍କର ଜ୍ଞାନ ମୁତାବକ ରଙ୍ଗ ଦେଇ ପିତୁଳାଟିକୁ ସୁନ୍ଦର କରିବାପାଇଁ ଚେଷ୍ଟା କରନ୍ତି । କିନ୍ତୁ ଯଦି ମୂଳରୁ ପ୍ରତିମା ତିଆରି କରିବା ବେଳକୁ ପିତୁଳାଟି ଅସୁନ୍ଦର ବା ଚିକ୍କଣ ନ ଥାଏ ତେବେ ରଙ୍ଗର ପ୍ରଲେପ ତାଙ୍କୁ କେତେ ସୁନ୍ଦର କରିବ । କେବଳ ରଙ୍ଗର ଝଟକ ସିନା ଉଠିବ, କିନ୍ତୁ ପ୍ରତିମାଟି ଆଉ ସୁନ୍ଦର ହେବ କି ? ଛାତ୍ର ରୂପ ପିତୁଳାପାଇଁ ମାଆ ବାପା ପ୍ରଥମେ ଦାୟୀ । ଯେଉଁ ବାପା ମାଆ କାରିଗର ଆଖି ନେଇ ପ୍ରଥମେ ପିତୁଳା ଗଢ଼ନ୍ତି ସେମାନଙ୍କର ଜ୍ଞାନ ଉଚ୍ଚାଙ୍ଗ ହେବା ଉଚିତ । ବ୍ୟତିକ୍ରମ ମଧ୍ୟ ହୁଏ । କେବେ କେବେ ଭଲ ପିତୁଳା ମଧ୍ୟ ଅଜ୍ଞାନୀ ତୂଳିକାରପାଇଁ ଖରାପ ହୁଏ । ପୁଣି ଖରାପ ପିତୁଳା ମଧ୍ୟ ଗୁଣୀ ତୂଳିକାରପାଇଁ ସୁନ୍ଦର ମଧ୍ୟ ହୁଏ । କିନ୍ତୁ ତାହା ଶତକଡ଼ା କେତୋଟି....ଛାଡ଼.... ।

ଠିକ୍ ନଅଟା ରାତିରେ ଖାଇବା ଘରେ ଘଣ୍ଟା ବାଜେ । ପିଲାଏ ଖାଇବାକୁ ବସିଯାଆନ୍ତି । ପ୍ରାୟ ସବୁଦିନେ ଭାତ । ଯିଏ ଭାତ ନ ଖାଏ ରୁଟି, ଅବଶ୍ୟ ରୁଟି ଖିଆ ଖୁବ୍ କମ୍ । ଦେହ ଖରାପ ଥିଲେ ରୁଟି, ଡାଲି, ଘାଣ୍ଟ, ଖଟା । ଯେଉଁଦିନ ମାଛ, ସେଦିନ ଘାଣ୍ଟ ଓ ଖଟା ନ ଥାଏ । ଯେଉଁମାନେ କେହି ମାଛ, ଆଳୁ, ବାଇଗଣ ଆଣି ପୂଜାରୀକୁ ଦେଇଥାଆନ୍ତି । ପୂଜାରୀ ତାହା ଭାଜିଦିଏ ବା ପୋଡ଼ିଦିଏ । ଯାହାର ଯେମନ୍ତ ବରାଦ । ଏହି ବରାଦିଆମାନେ ଶେଷ ଦଫାକୁ ଖାଇବାକୁ ବସନ୍ତି । ପ୍ରାୟ ତିନି ଦଫାରେ ଖିଆପିଆ କାମ ସରେ । ଆମ ସାଥିରେ ଗୋଟିଏ ପିଲା ରହୁଥିଲା, ତା' ନାମ ଆଜି ମୋର ମନେ ନାହିଁ । ସେ ସକାଳ ଓଳି କିଛି ନା କିଛି ଏମିତି ଅଧିକା କରାଇ ଖାଏ । ତା'ର ସବୁ ପ୍ରାୟ ପୋଡ଼ା ହୁଏ । ମେଞ୍ଚାଏ ପିଆଜ ବା ରସୁଣ, ଲଙ୍କା, ସୋରିଷ ତେଲ, ଲୁଣ



Digitized by srujanika@gmail.com

ଗୋଟାଏ ଥାଳିଆରେ ତା'ର ସ୍ପେସାଲ ଜିନିଷଟି ଆଣି ପୂଝାରୀ ତା'ପାଖରେ ରଖିଦିଏ । ସେ ତାକୁ ଚକଟି ଦେଇ ଖାଏ । ଯେଉଁଦିନ ମାଛ ଆଣେ ଗୋଟିଏ, ଖୁବ୍ ବେଶୀହେଲେ ଅଧସେରେ ତିନିପା ଓଜନ ଥିବ । ତାହା ମଧ୍ୟ ପେଟ ଚିରା ପୁଣି ଆଦି ବାହାର କରି ପୋଡ଼ା ହୁଏ । ମୋର ତ ସବୁଦିନେ ବରାଦିଆ, ଏଣୁ ଶେଷ ଦଫାରେ ବସେ । ଯେଉଁଦିନ ମୋର ବଦମାସୀ ବୁଦ୍ଧି ଆସି ପହଞ୍ଚେ, ସେଦିନ (ହଁ ଗୋଟାଏ ମଜା କଥା । ସେ ଖାଇଲା ବେଳେ ଯଦି 'ଅଣ୍ଡା' ବୋଲି କେହି ଉଚ୍ଚାରଣ କଲା ତେବେ ସେ ଖାଇବା ସ୍ଥାନରୁ ଉଠିଯାଏ । ସେ ଖାଇବାବେଳେ ମେସ୍ ତରକାରି କେହି ଅଧା ଖାଇଲା ପରେ ସେ ତା'ର ମାଛ ବା ଅଧିକା ତରକାରି ଖାଇବା ଆରମ୍ଭ କରେ ।) ଠିକ୍ ତା'ର ମାଛ ଖାଇବା ଆରମ୍ଭ କରିବା ପୂର୍ବରୁ ମୁଁ ମେନେଜରଙ୍କୁ କହେ, ''ଆଜ୍ଞା ମୁଁ ପରା କହିଥିଲି ମୋପାଇଁ ଦୁଇଟା ଅଣ୍ଡା ଭାଜି ଦେବାପାଇଁ, କାହିଁ ପୂଝାରି ତ ଦେଲା ନାହିଁ ।'' ବାସ୍ ସରିଲା, ବାବୁ ଖାଇବା ଜାଗାରୁ ଉଠି ହାତମୁହଁ ଧୋଇ ଚଲ୍ । ମୁଁ ତାଙ୍କର ମାଛଟା ଆଣି ଆରାମରେ ଖାଇଦିଏ । କେତେକ ହସନ୍ତି, କେତେକ ମୋତେ ଗାଳି ଦିଅନ୍ତି । ଦିନେ ମୋତେ ଗୌରାଙ୍ଗ ବାବୁ ଡକାଇ ମୁଁ କାହିଁକି ଏମିତି କରେ ବୋଲି ପଚାରିଲେ । 'ଆପତ୍ତି ସେ ପିଲା କରି ନାହିଁ' ମୋର ଉତ୍ତର । ସତରେ ସେ ପିଲା କିନ୍ତୁ ଏଥିପାଇଁ ଅନ୍ୟ କାହାରି ପାଖେ କେବେ କିଛି କୁହେ ନାହିଁ ବା ବିରକ୍ତ ହେବାର ଲକ୍ଷଣ କିଛି ଜଣାଯାଏ ନାହିଁ । କେହି ପଚାରିଲେ ହସିଦିଏ । ଯାହାହେଉ ଗୌରାଙ୍ଗ ବାବୁଙ୍କୁ ମୁଁ କହିଥିଲି ଆଜ୍ଞା, ମୁଁ ଅଣ୍ଡା ବିଷୟ ପଚାରିବାରେ ଦୋଷ କାହିଁ ? ଆଉ ଜଣେ ଯଦି ନ ଖାଇ କିଛି ଛାଡ଼ିଯାଏ, ତାହା ଯଦି ଜଣେ ଖାଏ ତେବେ ସେଥିରେ ମଧ୍ୟ ଦୋଷ କାହିଁ ? ଗୌରାଙ୍ଗ ବାବୁ ମଧ୍ୟ ଏହା ଶୁଣି ମୋତେ କିଛି ନ କହି ସେ ପିଲାଟିକୁ ଡାକି ଅଣ୍ଡା କଥାଶୁଣି ଏମିତି ଉଠି ନ ଆସିବାପାଇଁ କହିଥିଲେ । କିନ୍ତୁ ସେ ପାରିଲା ନାହିଁ । ଅଣ୍ଡା କଥା ଶୁଣିଲେ ତାକୁ କୁଆଡ଼େ ବାନ୍ତି ଆସେ । ମୋର ମଧ୍ୟ ଦୁଷ୍ଟାମି ବନ୍ଦ ହୁଏ ନାହିଁ । ଶେଷରେ ସୁପରିଣ୍ଟେଣ୍ଡେଣ୍ଟଙ୍କ ନିର୍ଦ୍ଦେଶରେ ଆମେ ଖାଇବାକୁ ବସିଥିବା ବେଳେ ପୂଝାରୀ ଆସି ତା ରୁମ୍‌ରେ ତାକୁ ଖାଇବାର ଦେଇଯାଏ ଯେଉଁଦିନ ମାଛ ଥାଏ ।

ରାତି ଖାଇବାର ଅର୍ଡ଼ର ନେବାପାଇଁ ଆସିଲା । ସାମ୍ନା ଭଦ୍ରଲୋକ ଖାଇବା ଅର୍ଡ଼ର ଦେବା ବେଳକୁ ତାଙ୍କ ସ୍ତ୍ରୀ କହିଲେ ''ମୋପାଇଁ ଅର୍ଡର ଦେବ ନାହିଁ, ଆଜି ଏକାଦଶୀ ।'' ମୋର ଏକାଦଶୀ କଥା ମନେ ପଡ଼ିଗଲା । ପ୍ରତି ଦିନ ଶନିବାର ସନ୍ଧ୍ୟାବେଳେ ଗୋଟିଏ ରୁମ୍‌ରେ ପ୍ରାର୍ଥନା ହୁଏ ଓ ଗୌରାଙ୍ଗ ବାବୁ କିଛି ଧର୍ମକଥା କୁହନ୍ତି; ବୁଢ଼ା ସୁପରିଣ୍ଟେଣ୍ଡେଣ୍ଟ ମଧ୍ୟ ନୀତି କଥାମାନ କହନ୍ତି । ଦିନେ ସେ କହିଲେ ପ୍ରତି ମାସରେ ଏକାଦଶୀ ଉପବାସ କରିବା ଉଚିତ । ଭାତ ଆଦି ନ ଖାଇ ସୂର୍ଯ୍ୟାସ୍ତ ପୂର୍ବରୁ କିଛି ଜଳଖିଆ ଖାଇ ରହିବା ଭଲ । ଏହାର ଦୁଇ ଦିନ ପରେ ଏକାଦଶୀ ପଡ଼ିଲା । ମୁଁ ସକାଳୁ ଯାଇ ତାଙ୍କୁ ଏକାଦଶୀ କରିବା କଥା କହିଲି । ସେ ଶୁଣି ଭାରି ଖୁସି । ହଷ୍ଟେଲକୁ ଆସି



Digitized by srujanika@gmail.com

ମୋ ବରାଦ୍ ଅନୁସାରେ ଏକାଦଶୀପାଇଁ ଖାଇବାର କରିଦେବାପାଇଁ କହିଗଲେ । ମୁଁ ପରେ ବରାଦ କଲି ଲୁଚି, ଆଳୁଦମ୍, ବୁଟଡାଲି, ରସଗୋଲା, ଦହି ଆଦି । ସ୍କୁଲରୁ ଆସି ଗାଧୋଇ ପଡ଼ି ଖାଇବା ଘରକୁ ଯାଇ ରସଗୋଲା ଏକ ସେର, ଦହି ଅଧସେର ହେବ, ଲୁଚି ୨୫/୩୦ ଖଣ୍ଡ ସେହି ପରିମାଣ ଆଳୁଦମ୍, ଡାଲି ଆଦି ଖାଇ ଦେଇ ଆରାମରେ ବିଛଣାରେ ଶୋଇଲି । ତହିଁପର ଦିନ ପୂଜାରୀ ଯାଇ ଯେତେବେଳେ ପ୍ରାୟ ଦୁଇ ଟଙ୍କାର ହିସାବ ଦେଲା ବୁଢ଼ା ତ ପାଗଳ । ମୋ ପାଖକୁ ଆସି ମୁଁ କଅଣ କଅଣ ଖାଇଲି ବୁଝିଲେ । ସବୁ ଶୁଣି ଦଣ୍ଡେ ମୋ ଖଟ ଉପରେ ବସିଗଲେ । ପଚାରିଲେ ମୋର ବୟସ କେତେ ? ମୁଁ ୧୪/୧୫ କହିଲି । ତହୁଁ ସେ କହିଲେ ''ବାପ ଏତେ କମ୍ ବୟସରେ ଏକାଦଶୀ କରିବା ଉଚିତ ନୁହେଁ, ଦେହ ଶୁଖି ଯିବ । ଆଉ ଏକାଦଶୀ କରିବୁ ନାହିଁ । ପରେ ପୂଜାରୀଠାରୁ ଶୁଣିଲି ୨ଟଙ୍କାର ଜିନିଷ ଖାଇଥିବାର ଶୁଣି ବୁଢ଼ା ପାଗଳ ହୋଇ ଯାଇ ଥିଲେ । ତତ୍‌ସମୟରେ ରସଗୋଲା ସେର ଟ୦୍ୟ, ଦହି ସେର ଓଜନରେ ନୁହେଁ ହାଣ୍ଡିରେ ବଡ଼ ହାଣ୍ଡି ଟ୦୍ୟଙ୍କା ।

ଆଉ ଦିନକର କଥା-ଆମ ହଷ୍ଟେଲରେ ଚାରି ସେଟ୍ ବ୍ୟାଡ଼୍‌ମିଣ୍ଟନ୍ ଖେଳ ସରଞ୍ଜାମ ଥାଏ । ଏଇ ଆଠଟି ରାକେଟ୍ । ପରେ ମୁଁ ନିଜେ ମୋର ଗୋଟିଏ ଦାମିକା ରାକେଟ୍ କିଣିଥାଏ । ସେଟା ମୋ ବିଛଣା ମୁଣ୍ଡ ପାଖରେ ଗୋଟିଏ କଣ୍ଟାରେ ଟଙ୍ଗା ହୋଇଥାଏ । ପିଲାମାନେ ସ୍କୁଲରୁ ଫେରି ଯେଉଁମାନଙ୍କର ଖେଳ ଝୁଙ୍କ୍ ବେଶୀଥାଏ, ସେମାନେ ଚଟାପଟ୍ ନେଟ୍ ବାନ୍ଧିଦେଇ ଖେଳ ଆରମ୍ଭ କରି ଦିଅନ୍ତି । ଗୋଟିଏ ଦୁଇଟି ଖେଳ ପରେ ଅପେକ୍ଷା କରିଥିବା ଅନ୍ୟକୁ ରାକେଟ୍ ଦିଅନ୍ତି । ଦିନେ ମୁଁ ସ୍କୁଲରୁ ଫେରି ବହି ରଖିଦେଇ ଖେଳିବାପାଇଁ ବାହାରିଲାବେଳକୁ ଦେଖେ ତ ମୋ ରାକେଟ୍ ନାହିଁ । ତଳକୁ ଯାଇ ପଡ଼ିଆରେ ଦେଖିଲି ବାଞ୍ଛାନିଧି ବୋଲି ଗୋଟିଏ ପିଲା ମୋ ରାକେଟ୍ ନେଇ ଖେଳୁଛି । ମୁଁ ମୋ ରାକେଟ୍ କାହିଁକି ଆଣିଛୁ ବୋଲି ପଚାରିଲାରୁ ''ଏମିତି ନେଇ ଆସିଛି'' କହି ଖେଳିବାକୁ ଲାଗିଲା । ସେ ଗେମ୍‌ଟି ଖେଳ ସରିଲା ପରେ ମୁଁ ରାକେଟ୍ ମାଗିବାରୁ ସେ ''ରାକେଟ୍‌ରେ କଅଣ ଛାପ ମରା ହୋଇଛି'' କହି ଦେବାକୁ ନାରାଜ ହେଲା । ମୁଁ ଦଉଡ଼ି ଯାଇ ରାକେଟ୍ ଧରିବାରୁ ସେ ଦୁଇପଟରୁ ହାତରେ ଧରି ଛାଡ଼ିବାକୁ ନାରାଜ ଥିଲା । ମୁଁ ମଧ ଦୁଇ ହାତରେ ସେ ରାକେଟ ମଝିରେ ଧରି ତାକୁ ଟାଣି ଏମିତି ଘୁରାଇ ଛାଡ଼ିଦେଲି ଯେ ସେ ଖଣ୍ଡେ ଦୂରରେ ମୁହଁ ମାଡ଼ି ପଡ଼ିଲା । ତା' ନାକ, ଓଠ, ମୁଣ୍ଡ, ହାତ ପାପୁଲି, ଗୋଡ଼ ଆଣ୍ଠୁ ଆଦି ମାଟିରେ ଘଷି ହୋଇ ଛିଣ୍ଡି ରକ୍ତ ବାହାରିବାକୁ ଲାଗିଲା । ମୁଁ ଗୋଟିଏ ଗେମ୍ ଖେଳି ମୋ ରାକେଟ୍‌ଟିକୁ ଅନ୍ୟ ଜଣକୁ ଦେଇ ଦେଖେତ ଗୌରାଙ୍ଗ ବାବୁ ତାକୁ ନେଇ ତାଙ୍କ ଅଫିସ୍‌ରେ ଶୁଶ୍ରୂଷା କରୁଛନ୍ତି । ଏହା ଦେଖି ମୋର ଆଶଙ୍କା ହେଲା, ଏହାର ପରିଣାମ ମୋ ପକ୍ଷରେ ଭଲ ହେବ ନାହିଁ । ଗୋଟିଏ



Digitized by srujanika@gmail.com

ପ୍ରତିକାର କରିବାକୁ ହେବ। ଏଣୁ ଆମ ହଷ୍ଟେଲର ବାହାରକୁ ଆସି, ରାସ୍ତା ସେ ପଟରେ ଥିବା କଲିଜିଏଟ୍ ସ୍କୁଲ ହତା ପାଚେରି ପାଖରେ ଠିଆ ହୋଇ କିଛିକ୍ଷଣ ଭାବିଲି। ଦେଖିଲି ଯେ ସେ ପାଚେରିଟା ତିନି ଫୁଟ ଉଚ୍ଚ ଓ ତାହାର ଉପର ପଲସ୍ତରା ମୋଟା ବାଲିରେ। ମୁଁ ଦୁଇ ହାତରେ ପଚ୍ଛପଟ ହାତଗଣ୍ଠିଠାରୁ କହୁଣି ପର୍ଯ୍ୟନ୍ତ ହାତଦୁଇଟି ସେ କର୍କଶ କାନ୍ଥ ଉପରେ ଖୁବ୍ ଜୋର୍‌ରେ ଘଷି ଦେଲି। ତଦ୍ୱାରା ହାତଗଣ୍ଠିଠାରୁ କହୁଣି ପର୍ଯ୍ୟନ୍ତ ଚମଡ଼ା ଛାଡ଼ିଗଲା। ରକ୍ତ ଝରଝର ହୋଇ ବୋହିଲା। ମୁଁ ଚାଲିଲି ଆଗରେ ଥିବା ବୁଢ଼ା ସୁପରିଣ୍ଟେଣ୍ଡେଣ୍ଟଙ୍କ ଘରକୁ। ସେତେବେଳେ ସେ ଗାମୁଛା ପିନ୍ଧି ବାହାରେ ବୁଲି ଗୁଡ଼ାଖୁ ଘଷୁଥିଲେ। ମୋତେ ଓ ମୋର ଅବସ୍ଥା ଦେଖି ବ୍ୟାକୁଳ ହୋଇ ‘‘କଅଣରେ, କେମିତି ଏପରି ହେଲାରେ’’ କହି ତାଙ୍କ ସ୍ତ୍ରୀଙ୍କୁ ଡାକ ପକାଇ ଅମୃତାଞ୍ଜନ ଆଣି ମୋ ହାତରେ ଲେପିଦେଇ ଗୋଟିଏ ସରୁ କନା ତା’ଉପରେ ପକାଇ କ୍ଷତ ସ୍ଥାନକୁ ବାନ୍ଧିଦେଲେ। ମୋତେ ଏହାର କାରଣ ପଚାରିବାରୁ କହିଲି ‘‘ବାଞ୍ଛାନିଧି ମୋ ରାକେଟ୍ ନ ଦେଇ ମୋ ସହିତ ଟଣା ଓଟରା କରି ମୋତେ ଫୋପାଡ଼ି ଦେବାରୁ ମୁଁ ପଡ଼ିଯାଇ ଏମିତି ହେଲା। ଆଉ ଶେଷରେ ସେ ପଡ଼ିଗଲା।’’ସୁପରିଣ୍ଟେଣ୍ଡେଣ୍ଟ କହିଲେ, ‘‘ଆଜି ମୁଁ ତା’କୁ ଦେଖିବି। ତୁ ଯା ଚୁପ ହୋଇ ଶୋଇପଡ଼ିବୁ, ମୁଁ ଗଲେ ବିଚାର ହେବ।’’ ମୁଁ ହଷ୍ଟେଲକୁ ଆସି ନାନାଦି ଚିନ୍ତା ଓ ତା ସହ ହାତକଷ୍ଟରେ ଶୋଇଥାଏ। ଠିକ୍ ସନ୍ଧ୍ୟାବେଳକୁ ସେ ନିଜେ ଆସି ମୋତେ ବିଛଣାରୁ ଉଠାଇ ନେଇ ଅଫିସକୁ ଗଲେ ଓ ଗୌରାଙ୍ଗ ବାବୁଙ୍କୁ କହିଲେ ‘‘ଏ ପିଲାଟା ତ ଆଜି ମରିଯାଇଥାଆନ୍ତା, ଆପଣ ଏଠି କିଛି ଦେଖୁ ନାହାନ୍ତି, କାହିଁ ବାଞ୍ଛାନିଧି ? ଆଜି ତାକୁ ବେତ ମାଡ଼ ଦେଇ ହଷ୍ଟେଲରୁ ବାହାର କରିଦେବି।’’ ବିଚାରା ଗୌରାଙ୍ଗ ବାବୁ ମୋତେ ଓ ମୋର ହାତର ଅବସ୍ଥା ଦେଖି ଆଁ କରି ଚାହିଁ ରହିଥାଆନ୍ତି। ବୁଢ଼ା ଦରୱାନ୍‌କୁ ବାଞ୍ଛାନିଧିକୁ ଡାକି ଆଣିବାପାଇଁ କହିବାରୁ ଦରୱାନ୍ ତାକୁ ଡାକିଆଣିବାପାଇଁ ଗଲା। ଗୌରାଙ୍ଗ ବାବୁ କହିଲେ ‘‘ଆଜ୍ଞା ବାଞ୍ଛାନିଧିର ମୁହଁଠାରୁ ଗୋଡ଼ ପର୍ଯ୍ୟନ୍ତ ସବୁ ଛିଣ୍ଡିଯାଇଛି। ଏତ ତାକୁ ଟେକି ଘୂରାଇ ଦେଇ ଫୋପାଡ଼ି ଦେଲା। ସେ ବିଚାରାକୁ ମୁଁ ଉଠାଇନେଇ ଔଷଧ ଆଦି ଦେଲି। ଇଏତ ତା’ପରେ ଖେଳ ଖେଳି ବାହାରକୁ ଚାଲିଗଲା। ଏହାର ତ କିଛି ହୋଇ ନ ଥିଲା।’’ ଏ କଥା ଶୁଣି ବୁଢ଼ା ଖୁବ୍ ରାଗି ଉଠି କହିଲେ, ‘‘ମୁଁ କଅଣ ମିଛି କହୁଛି।’’ ଏହା କହି ମୋ ହାତରେ ବନ୍ଧା ଥିବା କନା ଖୋଲିଦେଲେ। ଗୌରାଙ୍ଗ ବାବୁ ମୋ ହାତର ଅବସ୍ଥା ଦେଖି ଆହାହା କହି ଉଠିଲେ। ଠିକ୍ ଏତିକିବେଳକୁ ଶ୍ରୀମାନ ବାଞ୍ଛାନିଧି ଗୋଟିଏ ଚାଦର ଢାଙ୍କି ହୋଇ ହାଜର। ବୁଢ଼ା କିଛି କହିବା ପୂର୍ବରୁ ଗୌରାଙ୍ଗ ବାବୁ ଉଠିଯାଇ ତା’ ଦେହରୁ ଚାଦରଟି ଧୀରେ ଖୋଲି ଦେଲେ। ସେ ଚେହେରା ଦେଖି ଏତେ ଦୁଃଖରେ ମଧ ମୁଁ ହସି ପକାଇଲି। ମୁଣ୍ଡ, ନାକ, ଗୋଡ଼, ଓଠ, କହୁଣି, ଆଣ୍ଠୁ ଚାରିଆଡ଼େ ଖଣ୍ଡିଏ ଖଣ୍ଡିଏ ତୁଳା ଲଗା ହୋଇଛି, କି



Digitized by srujanika@gmail.com

ଅଦ୍ଭୁତ ଚେହେରା । ତା' ରୂପଦେଖି ବୁଢ଼ାଙ୍କର ପାଟି ମେଲା । ମୋତେ ଥରେ ବାଞ୍ଛାନିଧିକୁ ଥରେ ଚାହିଁବାରେ ଲାଗିଛନ୍ତି । ଶେଷରେ ବାଞ୍ଛାନିଧିକୁ ଯିବାପାଇଁ କହିଲେ । ସେ ଚାଲିଗଲା । ଗୋଟେ ଦିନ ପରେ ମୋତେ ପାଖକୁ ଡାକି କହିଲେ "ମୋ ବାପାଟା ପରା ! ସତ କହ ଘଟଣା କଣ, ମୁଁ କିଛି ବୁଝି ପାରୁନି ।" ତାଙ୍କର କହିବା ଠାଣି ଯେପରି ନେହୁରା ହେଉଛନ୍ତି । ମୋ ପିଲାଦିନର ଅଭ୍ୟାସ, ମୁଁ ମିଛ କହେନି । ମୁଁ ଧୀରେ ସମସ୍ତ ଘଟଣା କହିଲି । ମୁଁ କିପରି ରକ୍ଷା ପାଇବି ଭାବି ନିଜେ ନିଜେ ହାତ କାନ୍ଥରେ ଘଷି ଏମିତି କରିଛି ଶୁଣି ଉଭୟ ହାୟ ହାୟ କରି ଉଠିଲେ । ସେହି ଘାଆ ଶୁଖିବାକୁ ପ୍ରାୟ ମାସେ ଲାଗିଥିଲା ।

ଆମ ହଷ୍ଟେଲରେ ମୟୂରଭଞ୍ଜ ମୁରୁଡ଼ା ସର୍ଦ୍ଦାରଙ୍କ ପୁଅ ଶ୍ରୀ ରତିକାନ୍ତ ପଟ୍ଟନାୟକ ରହୁଥିଲେ, ସେ ଭିକ୍ଟୋରିଆ ସ୍କୁଲରେ ପଢୁଥିଲେ । ଏ ଉଭୟେ ମୟୂରଭଞ୍ଜବାସୀ । ଏଣୁ ଟିକିଏ ପରସ୍ପର ପ୍ରତି ସ୍ୱତନ୍ତ୍ର ମମତା ଥାଏ । ରତିକାନ୍ତ ସହ ମୋର ସମ୍ପର୍କ ଘନିଷ୍ଠ । ଆମେ ମୟୂରଭଞ୍ଜବାସୀ-ରାଜାଙ୍କ ଆଶ୍ରୟରେ ଆମ ପରିବାର । ଗାନ୍ଧିଙ୍କ ନାଁ ଶୁଣିଲେ କଂଗ୍ରେସିଆ ବୋଲି ଚିହ୍ନା ପଡ଼ିବା କଥା । ଆମ ସୁପରିଣ୍ଟେଣ୍ଡେଣ୍ଟଙ୍କ ଡର ମୋପାଇଁ କାରଣ ମୁଁ ତାଙ୍କ ୱାର୍ଡ଼-କାଳେ ମୁଁ ସଂଗ୍ରାମରେ ମିଶିବି । ହେଲେ ଆମେ ଦି'ଜଣ ହଷ୍ଟେଲ ଭିତରେ ଲୁଚିବା ପିଲା ନ ଥିଲୁ । ବର୍ଷାଦିନ, ସ୍କୁଲରୁ ଯାଇ କଟକ ଟାଉନ୍‌ହଲରେ ସେବା କାମ କରିବୁ । ଗାନ୍ଧି ମହାତ୍ମାଙ୍କ ସଭା ହେବାର ଥାଏ । ଟାଉନ୍ ପିଲାଙ୍କ ସହ ଦୁଇ ଦିନ ଗଲାପରେ କିଏ ଖଚୁଆ କହିଦେଲା କଥାଟା । ଆମକୁ ବୁଝାଇ ସୁଝାଇ ସେଦିନଟା ଅଟକାଇଦେଲେ,ହେଲେ ଟାଉନ୍‌ହଲ୍ ସଭାକୁ ଯିବୁବୋଲି ଆମେ ଆଗଦିନ ରାତିରୁ ପାଣି ପାଇପ ଧରି ଓପର ତାଳାରୁ ଓହ୍ଲାଇ ଗେଟ ଡେଇଁ ପାର୍ । ରାତିରେ ଗାଳି ଗୁଲଜ ହେଲା-ବେତଟାଏ ଧରି ସୁପରିଣ୍ଟେଣ୍ଡେଣ୍ଟ ଫଁ ଫଁ ଗର୍ଜୁଥାନ୍ତି । ଚାକିରି ପଳାଇବ ବୋଲି ତାଙ୍କର ସବୁଠାରୁ ଡର । ରତିକାନ୍ତ ଖୁବ୍ ବଳବାନ୍ ଓ ଦୁର୍ଦ୍ଦାନ୍ତ ଥିଲେ । ଦିନେ ରାତି ପ୍ରାୟ ବାରଟାବେଳେ ସେ ଆସି ହଠାତ୍ ବଜାରରେ ଘରପୋଡ଼ି ଯାଉଛି କହି ମୋତେ ଉଠାଇଲେ । ଆମେ ଦୁଇଜଣ ଗେଟ୍ ପାଖରେ ପହଞ୍ଚି ଗେଟ୍ ଡେଇଁ ନିଆଁ ପାଖକୁ ଦଉଡ଼ିଲୁ । ଆମ ସାଥିରେ ଆଉ ପାଞ୍ଚ/ଛଅଜଣ ପିଲା ମଧ୍ୟ ଯାଇଥିଲେ । ଯାଇ ଦେଖିଲୁ ବାଲୁବଜାର ଛକରେ ଗୋଟିଏ ଲାଇନରେ ନିଆଁ ଲାଗିଛି । ପ୍ରଥମ ଦୋକାନଟି ପରିବା ଦୋକାନ, ଦ୍ୱିତୀୟ ମିଷ୍ଟାନ୍ନ ଦୋକାନ, ଚାଳ ପୋଡ଼ିଯାଇ ଜଳୁଛି । ସେ ଗୁଡ଼ିଆଟି ଖାଲି ଚିତ୍କାର କରୁଛି । "ମୋ ଦୋକାନ ଭିତରେ ଘିଅଟିଣ ସବୁ ସରିଯିବ, ମୁଁ କଣ କରିବି, କେମିତି ରକ୍ଷାକର ।" ଆମେ କେତେଜଣ ଚାଳ ଉପରକୁ ଉଠି ଯାଇ ଚାଳ ଭାଙ୍ଗି କାନ୍ଥ ଉପରେ ଠିଆ ହୋଇ ଦେଖିଲୁ ଗୁଡ଼ିଏ ଟିଣ ଓ ବାକ୍ସରେ ଡିଆରେ ମିଷ୍ଟାନ ଅଛି । ତତ୍‌ମଧ୍ୟରେ ଗୋଟେ ବଡ଼ କରେଇରେ ପ୍ରକାଣ୍ଡ ପ୍ରକାଣ୍ଡ ରସଗୋଲା ମଧ୍ୟ ଅଛି । ଆମେ ଗୋଟିଏ ଦଉଡ଼ି



Digitized by srujanika@gmail.com

ଯୋଗାଡ଼ କଲୁ । ମୁଁ କାନ୍ଥ ଉପରୁ ତଳକୁ କୋଠରି ଭିତରକୁ ଡେଇଁ ପଡ଼ିଲି । ଉପରୁ ସେମାନେ ଦଉଡ଼ିର ଗୋଟାଏ ମୁଣ୍ଡ ତଳକୁ ପକାଇଲେ । ମୁଁ ଘିଅ ଟିଣମାନ ଗୋଟିଏ ଗୋଟିଏ କରି ବାନ୍ଧି ଦେଉଥାଏ । ସେମାନେ ଉପରୁ ଥାଇ ତାହା ଟାଣି ନେଉଥାନ୍ତି । ଏଣେ ମୁଁ ସେ ରସଗୋଲା ଖାଇବାରେ ଲାଗିଥାଏ । ହଠାତ୍ ରତିକାନ୍ତ ମଧ୍ୟ ଭିତରକୁ କୁଦି ପଡ଼ିଲା । ଯାହା ବାହାରକୁ ବାନ୍ଧି ଟେକିହେବ, ସବୁ ପ୍ରାୟ ଉଠିଗଲା । ସେ ଓ ମୁଁ ଯେତେ ପାରିଲୁ ରସଗୋଲା ଖାଇ ସେ କୋଠରି ଦୁଆର ଯାହା ଭିତରୁ ବନ୍ଦ ଥିଲା ତାହା ଖୋଲି ସେ ନିଆଁ ଭିତର ଦେଇ ବାହାରି ପଡ଼ିଲୁ । ଆମର ଏ ସାହସ ଦେଖି ଜମା ହୋଇଥିବା ଲୋକଙ୍କର କେତେ ଯେ ବାହାବା ପାଇଲୁ । ଦୋକାନୀର ଘିଅ ଟିଣମାନ ଉଦ୍ଧାର ହୋଇଥିବା ଦେଖି ସେ ମଧ୍ୟ ଖୁସି । ଆମେ କିଛି ସମୟ ବାହାରେ କାମ କଲାପରେ ସେଠାରୁ ଚାଲିଆସିଲୁ । ଏତେ ବର୍ଷ ହୋଇଗଲାଣି, କେଉଁଠି ନିଆଁ ଲାଗିବା ଖବର ପାଇଲେ ମୁଁ ଧାଇଁ ଯାଏ । ଘର ଉପରକୁ ଉଠି ନିଆଁ ଲିଭାର ବ୍ୟସ୍ତତା ଭିତରେ ସବୁବେଳେ ରସଗୋଲା ଖିଆ କଥା ମନେପଡ଼େ । ରସଗୋଲା ଖାଇବା କଥା ମନେ ପଡ଼ିଲେ ହସ ଲାଗେ । ଏଇ କଥାରୁ ବାରିପଦାର ଗୋଟାଏ ଘଟଣା ମନେ ପଡ଼ିଲା ।

ବାରିପଦାରେ ମୁଁ ସେତେବେଳେ ନୂଆ ସାଇକେଲ ଶିଖିଥାଏ । ମନାମିଆଁ ବୋଲି ଜଣେ ସାଇକେଲ ବ୍ୟବସାୟୀ ଥିଲେ । ତାଙ୍କର ଗୋଟିଏ ୧୮''ର Fixed wheel cycle ଥାଏ । ସେଟା ସେ ଘଣ୍ଟାକୁ ଦୁଇ ପଇସା ହିସାବରେ ଭଡ଼ା ଦିଅନ୍ତି । ସେଇଥିରେ ଚାରି/ଛଅଘଣ୍ଟା ପରିଶ୍ରମ କରି ଚଳାଇ ଶିଖିଥାଏ । ତା'ପରେ ଥରେ ଦୁଇଥର ବଡ଼ ସାଇକେଲ ମଧ୍ୟ ଚଢ଼ିଛି । ଦିନେ ହଷ୍ଟେଲରେ ଖାଇସାରି ସମସ୍ତେ ସ୍କୁଲକୁ ଯିବାକୁ ପ୍ରସ୍ତୁତ ହେଉଛନ୍ତି, ଏହି ସମୟରେ ଈଶ୍ୱର ବାବୁ ବୋଲି ଜଣେ ଭଦ୍ରଲୋକ ହଷ୍ଟେଲକୁ ତାଙ୍କ ପରିଚିତ ଜଣଙ୍କ ନିକଟକୁ ଗୋଟାଏ ଚକ୍‌ଚକିଆ ସାଇକେଲରେ ଆସି ସାଇକେଲକୁ ବାରନ୍ଦା ଧାରରେ ରଖିଦେଇ ଭିତରକୁ ଗଲେ । ମୁଁ ସେ ସାଇକେଲ ଦେଖି ଲୋଭ ସମ୍ଭାଳି ନ ପାରି ସ୍କୁଲକୁ ଯିବି କଅଣ ସାଇକେଲଟି ଧରି ବାରିପଦା ଷ୍ଟେସନ ଆଡ଼େ ବାହାରିଲି । ବାରିପଦା ଷ୍ଟେସନଠାରୁ ଟାଉନ ଆଡ଼କୁ ପ୍ରାୟ ଏକ କିଲୋମିଟର ରାସ୍ତା ପୂରା ଗଡ଼ାଣିଆ । ଥରେ ତଳକୁ ଆସି ପୁଣି ଷ୍ଟେସନ ଫେରିଲି । ଗଡ଼ାଣିରେ ଚମତ୍କାର ସାଇକେଲ ଗଡୁଛି । ମହା ଫୁର୍ତ୍ତି, ବେଶ୍ ଆରାମ ଲାଗୁଛି । ଗଡ଼ାଣି ସରିଆସିବାବେଳକୁ ଦେଖିଲି ଯେ ଗୋଟିଏ ଗଉଡୁଣୀ ବୁଢ଼ୀ ତା' ପସରାଟା ଧରି ଚାଲିଛି । ତାଙ୍କ ପସରାରେ ଦହି ଭାଣ୍ଡ, ମାଟି କଳସରେ ଘିଅ ଓ ଶାଳ ପତ୍ରରେ ଛେନା ପୁଡ଼ିଆ ଥାଏ । ଏହା ସେଠା ସମସ୍ତ ଗଉଡୁଣୀଙ୍କ ପସରାରେ ଥାଏ । ମୁଁ ତା'କୁ ଆଗରେ ଦେଖି ମୋର କାହିଁକି ମନେ ହେଲା ବୁଢ଼ୀ ଦେହରେ ସାଇକେଲ ବାଜି ଯିବ । ଏହା ଭାବୁ ଭାବୁ ମୋ ସାଇକେଲ ଆଗଚକ ତା' ପଛରେ ଧକ୍କା ଲାଗିଲା । ବିଚାରୀ ବୁଢ଼ୀ



Digitized by srujanika@gmail.com

ପଡ଼ିଗଲା । ତା'ର ସମସ୍ତ ପସରା ଅଛାଡ଼ି ହୋଇ ପଡ଼ିଲା । ମୁଁ ମଧ ପଡ଼ିଲି । ସେଇ ପଡ଼ିଥିବା ଅବସ୍ଥାରେ ଇତସ୍ତତଃ ପଡ଼ିଥିବା ଜିନିଷ ମଧ୍ୟରୁ ଛେନା ପୁଡ଼ିଆ ସବୁ ଖୋଲି ଛେନା ଖାଇଦେଇ, ସାଇକେଲ ଉଠାଇ ପଳାଇ ଆସି ଯଥା ସ୍ଥାନରେ ସାଇକେଲ ରଖି ଦେଲି । ଈଶ୍ୱର ବାବୁ ସେ ପର୍ଯ୍ୟନ୍ତ ଗପ କରୁଥିବାରୁ ମୋର ସାଇକେଲ ନେବା ଜାଣି ପାରିଲେ ନାହିଁ । ସ୍କୁଲକୁ ଗଲି । ପ୍ରଥମ ଘଣ୍ଟା ପରେ ପରେ ପିଅନ ଆସି ''ହେଡ୍‌ମାଷ୍ଟର ଡାକୁଛନ୍ତି'' ବୋଲି କହିବାରୁ ମୋ ମନରେ ଗୋଟାଏ ଦକା ପଶିଗଲା । ଭାବିଲି ଗଉଡୁଣୀ କଥା ଜାଣିଲେ କି ? ତା'ପରେ ଭାବିଲି ଏତେଦୂର କଥା ସେ ଜାଣିବେ କିପରି ? ହେଡ୍‌ମାଷ୍ଟର ଶ୍ରୀ ଶଚୀନ୍ଦ୍ର କୁମାର ଦାସ, ସେ ଆମର ଆତ୍ମୀୟ ହୁଅନ୍ତି । ସେ ଭଦ୍ରଖର ଭାଗବତ ମହାପାତ୍ରଙ୍କ ଝିଅଙ୍କୁ ବିବାହ କରିଥିଲେ । ଆମେ ତାଙ୍କ ସ୍ତ୍ରୀଙ୍କୁ କୁମ ଅପା ବୋଲି ଡାକୁ । ସେ ଯାହାହେଉ, ନାନା କଥା ଆଶଙ୍କା କରି ଅଫିସ ଘର ଭିତରକୁ ଗଲି । ସେ ଗଉଡୁଣୀ ବୁଢ଼ୀ ଦୁଆର ପାଖରେ କାନ୍ଥ ଧାରରେ ଠିଆ ହୋଇଥାଏ । ଏଣୁ ମୁଁ ଭିତରକୁ ଯାଇ ତାକୁ ଦେଖିଲି । ମୋତେ ଦେଖି ହେଡ୍‌ମାଷ୍ଟର ଆଙ୍ଗୁଳି ଦେଖାଇ ପଚାରିଲେ ଆକୁ ଚିହ୍ନ ? ମୁଁ ଫେରିପଡ଼ି ବୁଢ଼ୀକୁ ଦେଖିବା ମାତ୍ରେ ମୋର ମନେ ହେଲା ମୁଁ ବୋଧହୁଏ ଲୁଗାରେ ଟିକିଏ ପରିସ୍ରା କରି ପକାଇଲି । ମୁଁ ମୁଣ୍ଡ ହଲାଇ ହଁ କଲି ଓ ସେ ଯେ ଆମ ହଷ୍ଟେଲରେ ପ୍ରତିଦିନ ଦହି ଓ ଛେନା ଦିଏ ସେ କଥା ମଧ କହିଲି । ଆଜି ତୁମେ ତା'ଉପରେ ସାଇକେଲ ମଡ଼ାଇ ଦେଇ ତା'ର ପଡ଼ିଥିବା ଅବସ୍ଥାରେ ଛେନା ଖାଇଛ କି ନାହିଁ ବୋଲି ପଚାରିବାରୁ ମୁଁ ମୂଳରୁ ଶେଷ ପର୍ଯ୍ୟନ୍ତ ସମସ୍ତ କଥା କହିଗଲି । ଯାହାହେଉ ମୋର ସତ କହିବା ଦେଖି ବା ଆଉ କିଛି ଦେଖି ମୋତେ ମାଡ଼ ନ ହୋଇ କେବଳ ''ତୁମକୁ ଚାରିଅଣା ଜୋରିମାନା କରାଗଲା, ଯାଅ ବର୍ତ୍ତମାନ ନେଇଆସ'' ବୋଲି କହିଲେ । ମୁଁ କ୍ଲାସରୁ ବାହାରି ସିଧା ହେଡ୍‌ମାଷ୍ଟରଙ୍କ କ୍ୱାଟରକୁ ଯାଇ କୁମ ଅପା (ତାଙ୍କ ସ୍ତ୍ରୀ)ଙ୍କ ଠାରୁ ହେଡ୍‌ମାଷ୍ଟର ମାଗୁଛନ୍ତି ଚାରିଅଣା ଦିଅ ବୋଲି କହିବାରୁ ସେ ଚାରିଅଣାଟିଏ ଆଣି ମୋତେ ଦେଲେ । ମୁଁ ସେ ଚାରଣି ନେଇ ପହଞ୍ଚିବାରୁ ତାହା ଗଉଡୁଣୀକୁ ଦେବାପାଇଁ କହିଲେ ଓ ଗଉଡୁଣୀ ତାହାପାଇ''ମୋର ଢେର ହେଲା'' ବୋଲି କହି ଚାଲିଗଲା । ମୁଁ ମଧ କ୍ଲାସକୁ ଫେରି ଆସିଲି । ଖେଳଛୁଟି ହେଲା । ଖେଳୁଛି । ପୁଣି ପିଅନର ଆବିର୍ଭାବ । ହେଡ୍‌ମାଷ୍ଟର ଡାକୁଛନ୍ତି ତାଙ୍କ ଘରେ । ନିର୍ଭୟରେ ଗଲି ଘର ଭିତରକୁ । ପଚାରିଲେ, କିହୋ ପଇସା କେଉଁଠୁ ନେଇ ଦେଲ ? ''ମୋତେ ଜୋରିମାନା ହେଲା, ମୁଁ ଜୋରିମାନା ଦେଲି, ଯାହାଠୁ ନେଇ ଦେଲେ କଅଣ ହେଲା ?'' ତାଙ୍କ ସ୍ତ୍ରୀ ମଧ ମୋତେ ସପୋର୍ଟ କଲେ । ଶେଷରେ ହେଡ୍‌ମାଷ୍ଟର କହିଲେ ''ଦୁଷ୍ଟ, ଦୋଷ କଲ ତୁମେ, ଜୋରିମାନା ଦେଲି ମୁଁ ! ଏଥର ଆଉ ଜୋରିମାନା ନୁହେଁ ବେତ ।''



Digitized by srujanika@gmail.com

ଏମିତି ସମୟରେ ସେ ସାମ୍ନା ଭଦ୍ରଲୋକ କହିଲେ ''କଅଣ ଏତେ ଚୁପ୍ ଚାପ୍ ବସି ଭାବୁଛନ୍ତି ?'' ମୁଁ କହିଲି ''କଅଣ କରିବି, ଗାଡ଼ିରେ ତ ନିଦ ଲାଗେନି, ବସି ବସି ସେହି ଅତୀତର ପୃଷ୍ଠା ଓଲଟାଉଛି।'' ସେ କହିଲେ ''ଅତୀତକୁ ଭାବି ଲାଭ କଅଣ ? ବରଂ ଭବିଷ୍ୟତ ଚିନ୍ତା କରନ୍ତୁ।'' ମୁଁ କହିଲି ''ଭୁଲ, ଭବିଷ୍ୟତ ତ ଅନ୍ଧାର ! ତାକୁ ପୁଣି ଦେଖିବେ କଅଣ ବା ଭାବିବେ କଅଣ ? ଅତୀତ ହିଁ ସମ୍ପଦ, ତାକୁ ହିଁ ମୂଳଧନ କରି ବର୍ତ୍ତମାନ ଚାଲିବାକୁ ହେବ। ଅତୀତ ହିଁ ଆପଣଙ୍କୁ ନିର୍ଦ୍ଦେଶ ଦେବ ସୁପଥ କେଉଁଠି ? ଅତୀତର ଶିକ୍ଷା ହିଁ ଆପଣଙ୍କୁ ଆଗେଇ ନେବ ଠିକ୍ ରାସ୍ତା ଦେଇ। ଆଉ ବର୍ତ୍ତମାନ ଉପରେ ନିର୍ଭର କରି ଭବିଷ୍ୟତକୁ ଚାହିଁବା ମୂର୍ଖତା। ଭବିଷ୍ୟତ ଅନ୍ଧକାର ହୋଇଥାଇପାରେ, ତା'କୁ ଆଲୋକିତ କରିବାକୁ ଚେଷ୍ଟା ହିଁ କର୍ତ୍ତବ୍ୟ।'' ଭଦ୍ରଲୋକ ନିଃଶ୍ୱାସଟିଏ ପକାଇ କହିଲେ ''ଯାହା କୁହନ୍ତୁ, ଅତୀତ କୁହନ୍ତୁ ବର୍ତ୍ତମାନ କୁହନ୍ତୁ, ଭବିଷ୍ୟତ କୁହନ୍ତୁ ସୁଖ କାହିଁ ? ଏ ସଂସାରରେ ଦୁଃଖ ଜ୍ୱାଳାରେ ମଣିଷ ମରିଗଲା। ଆଉ କରିବ କଅଣ ? ସେଇ ଭବିଷ୍ୟତକୁ ଆଶା କରି ବଞ୍ଚିବା କଥା।''

ମୁଁ କହିଲି ''ଆଜ୍ଞା, ଦୁଃଖ କଅଣ ? ଦୁଃଖ ବୋଲି ତ କିଛି ନାହିଁ ବା ଦୁଃଖର କୌଣସି ଧରାବନ୍ଧା ଅର୍ଥ ବି ନାହିଁ। ସମସ୍ତ ହିଁ ସୁଖ, ସୁଖମୟ ସଂସାର। ଏଇଥିପାଇଁ କହନ୍ତି ଭଗବାନ ଯାହା କରନ୍ତି ମଙ୍ଗଳପାଇଁ। ଦୁଃଖ ବୋଲି ଯାହାକୁ ଆପଣ କହିବେ, ଅନ୍ୟ ଜଣେ ତାହା ପାଇଲେ କେତେ ସୁଖୀ ହେବ। ଗୋଟିଏ ସାଧାରଣ କଥା କହୁଛି। ନିତିମୂଲିଆ ଯେଉଁମାନେ ତାଙ୍କ କଥା ଭାବନ୍ତୁ। ବିଚରା ସକାଳୁ ଉଠି ତୋରାଣି ମନ୍ଦେ ପିଇ ଯାଏ ଖରାରେ ପୋଡ଼ିହୋଇ ଦ୍ୱିପହର ସମୟରେ କାମ ଶେଷ କରି ନଈ ପୋଖରୀରେ ବୁଡ଼ଟିଏ ଦେଇ ଘରକୁ ଫେରେ। ସ୍ତ୍ରୀ ବିଚାରୀ ଯାହା ବଳକା ଚାଉଳ ଥାଏ ତାକୁ ରାନ୍ଧି ତହିଁରେ ବାସି ତୋରାଣି ମିଶାଇ ରଖିଥାଏ। କେଉଁ ପୋଖରୀ ବା ଗଡ଼ିଆ ତୁଠରୁ ଅନାବନା ଶାଗ ମେଣ୍ଟାଏ ଆଣି ଖରଡ଼ି ଥାଏ। ସ୍ୱାମୀ ଫେରିଲା ବେଳକୁ ତା' ଆଗରେ ଭାତ ତୋରାଣି ମିଶା କଂସାଏ, ଶାଗରୁ ମେଣ୍ଟେ, ଲୁଣ ଓ ଲଙ୍କାଟିଏ ରଖିଦିଏ। ସ୍ୱାମୀ ଭାତ ତକ ଛାଣି ଖାଇଦେଇ ତୋରାଣି କଂସାକ ଢକ ଢକ କରି ପିଇ ଦେଇ ହାତ ଧୋଇ ଯେଉଁ ଶାନ୍ତିର ଢକାର ଦିଏ ତାହା କଅଣ ଭାତ, ଘିଅ, ଡାଲି, ମାଛ, ମାଂସ, ପଲାଉ ଆଦି ଖାଉଥିବା ଲୋକଙ୍କଠାରୁ ବେଶୀ ଶାନ୍ତିପ୍ରଦ ନୁହେଁ ? ଆପଣ ଭାବି ଦେଖନ୍ତୁ, ସେହି ଖାଇବାରେ କିଏ କେତେ ସୁଖୀ ? ସୁଖଟା ଥାଏ ମନରେ, ଆପଣ ସୁଖ ଭାବିଲେ ହିଁ ସୁଖ। ବେଶୀ ଆଶା କରିବାଟା ଠିକ୍ ନୁହେଁ। ଆପଣଙ୍କ ଯେତେ ପୂରଣ ହେଲେ ବି ଆପଣ ଆହୁରି ଆଶା କରୁଛନ୍ତି, ଆଶା ସଫଳ ନ ହେଲେ ସୁଖ ବା ଶାନ୍ତି ମିଳୁ ନାହିଁ। ଯିଏ ଯେତେ ଆଶାକୁ ଦୂରେଇ ପାରୁଛି ସେ ସେତେ ସୁଖ ପାଉଛି।''



Digitized by srujanika@gmail.com

ଭଦ୍ରଲୋକ କହିଲେ ''ଆଜ୍ଞା ଆଶା ତ ମଣିଷକୁ ବଞ୍ଚେଇ ରଖିଛି । ଖୋଜିଲା ବଳଦ ଆଜି ନ ମିଳିଲେ ଆଶା ତ କହୁଛି ହଉ କାଲି ମିଳିବ । ସେହି ଆଶାରେ ତ ମଣିଷ ରହି ପାରୁଛି ।''

''ଠିକ୍ କଥା ଆଜ୍ଞା ମଣିଷକୁ ଆଶା ବଞ୍ଚାଇ ରଖିଛି, କିନ୍ତୁ ସେ ଆଶା ଯେତେ ପାରିବେ କମ୍ କରନ୍ତୁ । ତା' ନ ହେଲେ ଆଶା ଦୂରାଶାରେ ପରିଣତ ହେବ । ଆଶା ନ ଥାଇ ଜୀବନ କାହିଁ ? ଆଶା ତ ବୈତରଣୀ ନଦୀ, ଏଣୁ ଆଶାକୁ ନିଜ ଆୟତ୍ତରେ ରଖିବା ହିଁ ସାଧନା ।''

''କଅଣ କହୁଛନ୍ତି ଆପଣ, ଆପଣ ବୋଧେ ବଡ଼ ଘରର ସନ୍ତାନ । ନିଜେ ଆରାମରେ ଅଛନ୍ତି, ସେଥିପାଇଁ ଏ କଥା କହୁଛନ୍ତି । ଆପଣଙ୍କ ଅଗରେ ଜଣେ ଖିରି ମାଲପୁଆ ଖାଉଥିବ ଓ ଆପଣ ଶୁଖିଲା ମୁଢ଼ି ଗଣ୍ଡାଏ ଖାଉଥିବେ, ଆପଣଙ୍କ ମନରେ କଅଣ କିଛି ହେବ ନାହିଁ ? ଆପଣ କଅଣ ଆଶା କରିବେ ନି ସେହି ଖିରି ମାଲପୁଆ ।''

''ନା, ଦୁଃଖ କରିବା କଥା ନୁହେଁ । ହଁ, ଆଶା କରନ୍ତୁ ତାହା ଭବିଷ୍ୟତରେ ପାଇବାପାଇଁ । ସେଥିପାଇଁ ଉଦ୍ୟୋଗ କରନ୍ତୁ । କିନ୍ତୁ ଦୁଃଖ କରିବ କାହିଁକି ? ଶୁଣନ୍ତୁ ମୋ କଥା ।''

ଆମ ଘରେ ପିଲାଦିନେ ସବୁଦିନେ ମାଛ ମାଂସ ହୁଏ । ମାଛ ସହ, ମାଛ ମୁଣ୍ଡଟାକୁ ମୋ ମାଆ କଅଣ କରେ ନା ଖଣ୍ଡ ଖଣ୍ଡ କରି ଆମ ଦୁଇ ଚାରିଜଣଙ୍କୁ ବାଣ୍ଟିଦିଏ । ମୁଁ କିନ୍ତୁ ସେ ଭାଗ ନିଏ ନାହିଁ, ମୁଁ କହେ ମୁଣ୍ଡ ଦେବ ତ ଗୋଟାମୁଣ୍ଡଟା ଦିଅ, ଏମିତି ସେଥିରୁ ଖଣ୍ଡେ ମୁଁ ଖାଇବି ନାହିଁ । ମାଆ ରାଗ କରି କହେ ତୁ ସବୁ ମୁଣ୍ଡଟା ଖାଇବୁ ଆଉ ଛୁଆ ଖାଇବେ ନାହିଁ ? ମୁଁ କହେ ଯାହାକୁ ଦେବୁ ଜଣକୁ ଦେ, ଆଜି ଜଣେ ଖାଉ, କାଲି ଜଣେ ଖାଉ ଏମିତି ପାଞ୍ଚ/ଛଅଦିନ ପରେ ତ ଦିନେ ପାଳି ପଡ଼ିବ । ସେ ତ ଆନନ୍ଦରେ ଖାଇବ । ପ୍ରତିଦିନ ଏମିତି ଖଣ୍ଡେ ଖଣ୍ଡେ ଖାଇବା ଅପେକ୍ଷା ଦିନେ ପୂରାଟା ଖାଇବା ଭଲ । ସେ କଥା ଆମ ବାବାଙ୍କ ପର୍ଯ୍ୟନ୍ତ ଗଲା । ସେ ମୋତେ ସମର୍ଥନ କରିଥିଲେ । ଯେତେଦିନ ପର୍ଯ୍ୟନ୍ତ ମୋ ଭାଗ ପଡ଼ି ନ ଥାଏ ମୋର ତ କାହିଁ ଦୁଃଖ ହୁଏ ନାହିଁ । ପିଲାଦିନୁ ମୁଁ ଏପରି ଆଶାକୁ ଦୂରେଇ ରଖିବାପାଇଁ ବାଧ ହୋଇ ଶିଖିଛି ଏବଂ ଶାନ୍ତି ମଧ ପାଇଛି ।

ମାଛ ଖାଇବା କଥାରୁ ମୋର ଉଦୁ ନନା କଥା ମନେ ପଡ଼ିଲା । ଉଦୁ ନନା ବ୍ରାହ୍ମଣ । ତାଙ୍କୁ କେଉଁଠାରୁ ବାବା ଅଣାଇ ରଖିଥିଲେ ଜଣା ନାହିଁ ଆମକୁ । ପାଠରେ ଶୂନ-ପୂଜା ପୂଜା କିଛି ଜଣା କି ନାହିଁ କେଜାଣି ! ଏତେବଡ଼ ଚନ୍ଦନଟିକା ବେକ ଛାତି ବାହୁ କପାଳରେ । ବେକରେ ତୁଳସୀ ମାଳି । ଘରସାମ୍ନା ପଟକୁ ମହାଦେବ ମନ୍ଦିରଟିଏ ତୋଳାଇଥିଲେ ବାବା । ସେଇଠି ବଡ଼ି ଭୋରରୁ ତାଙ୍କ କାମ ଆରମ୍ଭ । ସଫା ପୋଛା କରି ଫୁଲ ବେଲପତ୍ର ଚଢ଼ାଇ ଦେଇ ସେ ବାହାରି ଯାଏ ଛତା ଆଉ ବ୍ୟାଗ୍ ଖଣ୍ଡେ ଧରି ସୂର୍ଯ୍ୟ ବାହାରିବା ବେଳକୁ । ତା'ର କାମ ହେଲା ମାଛ ଯୋଗାଡ଼ କରିବା । ଅବ୍ରାହ୍ମଣ ହେଲେ ମାଛରେ ଲୋଭ ରହିବ, ଏଣୁ ବ୍ରାହ୍ମଣ ହିଁ ସୁବିଧାର ଲୋକ । ସିଏ ନଦୀ, ନାଳ,



Digitized by srujanika@gmail.com

ପୋଖରୀ, ଗଡ଼ିଆ ଯେଉଁଠି ଯେମିତି ଲୋକ ମାଛଧରନ୍ତି ତାଙ୍କୁ ସବୁ ବଇନା ଦେଇ ରଖିଥାଏ ଆଉ ଦିନ ଗୋଟାଏ ସୁଦ୍ଧା ନାନା କିସମର ମାଛ ଧରି ପହଞ୍ଚେ । ଦିନକପାଇଁ ବ୍ୟବସ୍ଥା ହୋଇଯାଏ । ବାବାଙ୍କ ପରେ ଉଦୁନନା କିନ୍ତୁ ଆଉ ରହିଲା ନାହିଁ । ତା'ପିଲାପିଲି କୁଆଡ଼େ ମଣିଷ ହୋଇ ଯାଇଥିଲେ, ଖାଲି ବାବାଙ୍କ ଖାତିରିରେ ସେ ରହୁଥିଲା । ସେ ଯେ କୁଆଡୁ ଆସିଥିଲା କୁଆଡ଼େ ଗଲା ଆମେ ଖବର ରଖି ନାହୁଁ ।

ଏତିକିବେଳେ କେନ୍ଦ୍ରପଡ଼ାରୋଡ୍ ଷ୍ଟେସନ୍‌ରେ ଗାଡ଼ି ରହିଲା । ଗାଡ଼ି ସେଠାରେ ବେଶୀକ୍ଷଣ ରହେ ନାହିଁ । ସେଦିନ ମାଲଗାଡ଼ି ଆସୁଥିବାରୁ ଅନେକ କ୍ଷଣ ରହିଲା । ଚା ପିଇଲି, ମହାନଦୀ ଆର ପାରିରେ କଟକ, ଜୋବ୍ରା ଆନିକଟ୍ ଦେଖାଯାଉଛି । ସେପାରିରେ କାଳିଆବୋଦା ଶ୍ମଶାନ, ଉଃ କି ଭୟଙ୍କର ଥିଲା ମୁଁ ପଢ଼ିଲାବେଳେ । ଏ ବିଜୁଳି ଆଲୁଅ ତ ନ ଥିଲା, ରାସ୍ତାଧାରରେ କିରାସିନି ଆଲୁଅର ବତିଖୁଣ୍ଟ । ଖାଲି ସେହି ଖୁଣ୍ଟ ତଳଟି ଆଲୁଅ, ଆଗ ଆଲୁଅକୁ ଚାହିଁ ଚାଲିବା କଥା । କାଳିଆବୋଦାରେ ପ୍ରାୟ ଦିନକୁ ଦୁଇ/ତିନିଟି ଶବ ପୋଡ଼ା ହେଉଥାଏ । ଜଙ୍ଗଲିଆ ଜାଗାଟା ବଡ଼ ବଡ଼ ଗଛ ଓ ବୁଦାରେ ପରିପୂର୍ଣ୍ଣ । ମନେ ପଡ଼ିଲା ଏହିଠାରେ ମୋର ସାଧନାର ପ୍ରଥମ ପରୀକ୍ଷାର ରାତି ।

କାଠଯୋଡ଼ି ହଷ୍ଟେଲରେ ଥିବା ସମୟରେ ଗୋଟିଏ ସିଙ୍ଗଲ ରୁମ୍‌ରେ ଖଣ୍ଡପଡ଼ାର ଚନ୍ଦ୍ରଶେଖର ସାମନ୍ତଙ୍କ ନାତି ଶ୍ରୀ ପଦ୍ମନାଭ ସିଂସାମନ୍ତ ରହି ପଢୁଥାଆନ୍ତି । ସେ ଭାରି ନୈଷ୍ଠିକ । ଖଣ୍ଡିଏ ଷ୍ଟୋଭ୍ ରଖି ନିଜେ ରୋଷେଇ କରି ଖାଆନ୍ତି । ସେ କୋଠରିକୁ କେହି ଯାଇ ପାରନ୍ତି ନାହିଁ । କେହି ଗଲେ ସେ କୋଠରି ବାହାରକୁ ଆସି କଥା କହନ୍ତି । ମୁଁ କେବଳ ଜଣେ ଯେ କି ସେ ଘର ଭିତରକୁ ଯିବାପାଇଁ ଅନୁମତି ପାଏ । ଯାଇ ସେ ଚେୟାରଟିରେ ବସେ । ଆଉ କିଛି ଛୁଇଁ ପାରିବ ନାହିଁ । ଯାହାହେଉ ଏତକ ସୁବିଧା ମୁଁ ପାଏ ବୋଲି କେହି କେହି ଥଟ୍ଟା ମଧ କରନ୍ତି । ତାଙ୍କର ଜଣେ କକା, ସେତେବେଳେ ବୟସ ୩୫ ବର୍ଷ ହେବ, ମଝିରେ ମଝିରେ କେବେ କେମିତି ଆସନ୍ତି । ତାଙ୍କର ସେହି ଘରେ ଦିନେ ଦୁଇଦିନ ରହି ପୁଣି ଚାଲି ଯାଆନ୍ତି । ସୁନ୍ଦର ସୁପୁରୁଷ, ତମ୍ବାଭଳି ରଙ୍ଗ, ପରିଧାନ ଗେରୁଆ ଧୋତି ଓ ଚାଦର । ଦେଖିଲେ ଆଖି ଲାଖି ରହେ । ମୁଣ୍ଡରେ ସିନ୍ଦୁର କଲି । ପଦ୍ମନାଭଠାରୁ ଶୁଣିଲି ଯେ ସେ ଜଣେ ସାଧକ, ବହୁତ କିଛି ସାଧନା କରିଛନ୍ତି । ଘରେ ପ୍ରାୟ ରହନ୍ତି ନାହିଁ । ଏମିତି ବୁଲୁଥାନ୍ତି । ସନ୍ଧ୍ୟାବେଳେ ଦିନେ ଦିନେ ତାଙ୍କୁ ମୁଁ ମୋର କୋଠରିକୁ ଡାକିନିଏ । ଅନ୍ୟ ପିଲାମାନେ ଜମା ହୁଅନ୍ତି । ନାନାଦି କଥା ପଡ଼େ । ଭୂତ, ପ୍ରେତ କଥା ପଡ଼ିଲାରୁ ଭୂତ ଅଛି କି ନାହିଁ ପ୍ରଶ୍ନ କଲୁ, ସେ ନିଶ୍ଚେ ଅଛି ବୋଲି କହିଲେ । ଆମକୁ ଦେଖାଇ ପାରିବେ ବୋଲି କହିଲେ । କହିଲେ ତୁମ ସୁପରିଣ୍ଟେଣ୍ଡେଣ୍ଟଙ୍କୁ କୁହ, ସେ ରାଜିହେଲେ ଦେଖାଇ ଦେବି । ଆମେ ସବୁ ଯାଇ ସୁପରିଣ୍ଟେଣ୍ଡେଣ୍ଟଙ୍କୁ କହିଲୁ । ସେ ଆସି ତାଙ୍କ ସହ କଥାବାର୍ତ୍ତା କରି ପରଦିନ ଗୋଟାଏ



Digitized by srujanika@gmail.com

କୋଠରି ଧୋଇ ଧାଇ ସଫା କରାଇଲେ । ସେ ସାଧକ ସମସ୍ତଙ୍କୁ ଗାଧୋଇ ସଫା ଲୁଗା ପିନ୍ଧି ଆସିବାପାଇଁ କହିଥିଲେ । ସନ୍ଧ୍ୟାବେଳକୁ ଆମେ ଗଲାବେଳକୁ ସେ ଗୋଟାଏ ବଡ଼ ଦୀପଟିଏ ଲଗାଇ ବସିଥାନ୍ତି । ସମସ୍ତେ ଆସି ବସିଗଲେ, ଦୁଇ ସୁପରିଣ୍ଟେଣ୍ଡେଣ୍ଟ ମଧ୍ୟ ବସିଥାନ୍ତି । ସେ ଝରକା ଦରଜା ବନ୍ଦ କରିଦେଇ, ଭୂତ, ଡାହାଣୀ କେବେ ସେ ଭୂତ ଦେଖିଥିଲେ, କେଉଁଠି କିଏ ଭୂତ ହାବୁଡ଼ରେ ପଡ଼ି କେମିତି ହଇରାଣ ହେଲେ ନାନାପ୍ରକାର ଗପ କରୁଥାନ୍ତି । ଆମେ ସବୁ ଭୟରେ ପାଖକୁ ପାଖ ଲାଗି ହୋଇ ଏକାଧ୍ୟାନରେ ଶୁଣୁଥାଉ । ହଠାତ୍ ବୁଢ଼ା ସୁପରିଣ୍ଟେଣ୍ଡେଣ୍ଟ କହିଲେ ''କାହିଁ ଆଜ୍ଞା, କଅଣ ଦେଖାଉଥିଲେ ପରା ରାତି ହୋଇଗଲା ।'' ସେ କହିଲେ 'ହଁ ଦେଖାଉଛି । ମୁଁ ଦୀପ ଲିଭାଇ ଦେବି ଆପଣମାନେ ଆଖି ବନ୍ଦ କରି ରହିବେ, ମୁଁ କହିବା ପର୍ଯ୍ୟନ୍ତ କେହି ଆଖି ଖୋଲିବେ ନାହିଁ, ଯଦି କେହି ଖୋଲେ ଏବଂ କିଛି ଘଟେ ମୁଁ ଦାୟୀ ହେବି ନାହିଁ । ମୁଁ ଯେତେବେଳେ କହିବି ସମସ୍ତେ ଆଖି ଖୋଲିବେ ।'' ଆମେ ସବୁ ଆଖି ବନ୍ଦ କରି ଡରରେ ହାତରେ ଆଖି ବନ୍ଦ କରି ରହିଲୁ । କିଛିକ୍ଷଣ ପରେ ସେ ଆଖି ଖୋଲିବାପାଇଁ କହିଲେ ଓ ସାମ୍ନା କାନ୍ଥକୁ ଚାହିଁବାପାଇଁ କହିଲେ । ଆମେ ଆଖି ଖୋଲି କାନ୍ଥକୁ ଚାହିଁ ଦେଖିଲୁ କି ବୀଭତ୍ସ, ନରକଙ୍କାଳ, ମୁଣ୍ଡ । ଡରରେ କେହି କେହି ପରିସ୍ରା କରିପକାଇଲେ । ନିଜ ନିଜ ମଧ୍ୟରେ କୁଣ୍ଢାକୁଣ୍ଢି ହୋଇ ପାଟି କରିବାକୁ ଲାଗିଲୁ । ସେ ପୁଣି ଦୀପ ହଠାତ୍ ଜଳାଇ ଦେଲେ ଓ ଦୁଆର ଝରକା ସବୁ ଖୋଲି ଦେଲେ । ଆମେ ସବୁ ପିଣ୍ଡରେ ପ୍ରାଣ ପାଇଲୁ । ତା'ପରେ ସେ କହିଲେ ଦେଖନ୍ତୁ ଭୂତ, ଡାହାଣୀ ଇତ୍ୟାଦି କିଛିର ରୂପ ନାହିଁ । ତାହା କେବଳ ନିଜ ମନର ଭାବନା । ଦେଖନ୍ତୁ, ଏ ଘରେ ମୁଁ ଆପଣମାନଙ୍କ ଆସିବା ପୂର୍ବରୁ ଯେଉଁ ତେଲ ଦୀପ ଜାଳିଥିଲି ତାହା ଟିକିଏ ଭିନ୍ନ ପ୍ରକାର ତେଲ । କବାଟ ଝରକା ବନ୍ଦ କରିଦେବାରୁ ସେ ଦୀପର ଧୂଆଁ ସମସ୍ତଙ୍କ ନାକରେ ପଶିଲା, ତଦ୍ୱାରା ସମସ୍ତେ ସାମାନ୍ୟ ନିଶାଗ୍ରସ୍ତ ହେଲେ । ପୁଣି ସେହି ଅବସରରେ ଭୂତପ୍ରେତ କଥା ହେବାରୁ ସମସ୍ତଙ୍କ ସ୍ନାୟୁ ଦୁର୍ବଳ ହୋଇଗଲା । ତା'ପରେ ଅନ୍ଧାର ହେବାରୁ ଆପଣମାନେ ଯେ ଯାହାର କଳ୍ପନା ଅନୁସାରେ ରୂପ ଦେଖିଲେ । ପୁଣି ଆଲୁଅ ଜଳାଇବାପରେ ଝରକା କବାଟ ଖୋଲି ଦେବାପରେ ଆପଣମାନେ ସୁସ୍ଥ ହେଲେ । ସ୍ପିରିଟ ବା ଶକ୍ତି ଅଛି, ତାହା ଦେଖାଯାଏ ନାହିଁ । କଳ୍ପନା ଅନୁସାରେ ଲୋକେ ଦେଖନ୍ତି । ଗାଁରେ ଅମୁକ ଗଛରେ ଭୂତ ଅଛି, ପିଲାଦିନେ ଶୁଣିଛନ୍ତି । କେହି କେହି ଦେଖିଛନ୍ତି ବୋଲି କୁହନ୍ତି । କିନ୍ତୁ ବିଦେଶୀ କେବେ ସେ ଗଛରେ କିଛି ଦେଖିବ ନାହିଁ, କାରଣ ସେ ଜାଣେ ନାହିଁ ଗଛର ମାହାତ୍ମ୍ୟ । ଏହିପରି ନାନା କଥା ପରେ ଆମେ ଯେ ଯାହାର ଗଲୁ ।

ତା'ପରେ ମୋର ଇଚ୍ଛା ହେଲା ମୁଁ ମଧ୍ୟ ସାଧନା ଶିଖିବି । ପଦ୍ମନାଭକୁ କହିବାରୁ ସେ ତା' ବାପାଙ୍କୁ ସିଧା କହିବାପାଇଁ କହିଲା । ଦିନେ ମୁଁ ଆଉ ପାଞ୍ଚଜଣ ସାଙ୍ଗପିଲା ସାଧନାପାଇଁ ଶିକ୍ଷା



Digitized by srujanika@gmail.com

ଆଶାରେ ତାଙ୍କୁ କହିଲୁ । ସେ ଶୁଣି ହସି ଉଡ଼ାଇଦେଲେ । କିନ୍ତୁ ଆମେ ସବୁ ତାଙ୍କୁ ଜୋକ ପରି ଲାଗି ରହିଲୁ । ଶେଷରେ ସେ କହିଲେ ସମସ୍ତଙ୍କୁ ପରୀକ୍ଷା ଦେବାକୁ ହେବ, ଯେ ଉତ୍ତୀର୍ଣ୍ଣ ହେବ ତାହା କଥା ବିଚାର କରାଯିବ । ଏହି ପରୀକ୍ଷାପାଇଁ ତାଙ୍କୁ ସେଠାରେ କିଛିଦିନ ଅଧିକା ରହିବାକୁ ପଡ଼ିଥିଲା । ଦିନେ ସକାଳେ 'ଆଜି ପରୀକ୍ଷା ହେବ' ବୋଲି କହିଲେ ଓ ମୁଠାଏ କି ଦି ମୁଠା ବିରି ଗୋଟାଏ ଦିଆଶିଲି ସମସ୍ତଙ୍କୁ ଯୋଗାଡ଼ କରିବାକୁ କହିଲେ । ଆମେ ବିରି ଓ ଦିଆଶିଲି ଯୋଗାଡ଼ କରି ରଖିଲୁ । ରାତି ପ୍ରାୟ ୧୨ଟାବେଳେ ଆମ ଛଅଜଣଙ୍କୁ ନେଇ ସେ କାଳିଆବୋଦା ଶ୍ମଶାନକୁ ଗଲେ । ଆମକୁ ପ୍ରତ୍ୟେକ ତିନିଟି କରି ହାଡ଼ ଓ ଗୋଟିଏ ଖପୁରି ଏବଂ କିଛି କାଠ ଗୋଟାଇ ଆଣିବାପାଇଁ କହିଲେ । ଆମେ ସବୁ ସାଥୀହୋଇ ସେ ସାଙ୍ଗରେ ନେଇଥିବା ଟର୍ଚ୍ଚ ସାହାଯ୍ୟରେ ସମସ୍ତ ଯୋଗାଡ଼ କରି ଆଣିଲୁ । ସମସ୍ତଙ୍କୁ କହିଲେ ଯେ ଆମକୁ ସବୁ ଅଲଗା ଅଲଗା ଜାଗାରେ ବସାଇ ଦେବେ ଓ ଚାରିପାଖରେ ଗୋଟାଏ ଗୋଟାଏ ବୃତ୍ତ ମାଟି ଉପରେ ତାଙ୍କ ହାତରେ ଥିବା ବେତରେ ଟାଣିଦେବେ । ଯେ କୌଣସି କାରଣରୁ ହେଉ ସେ ଆସି ଡାକିବା ପର୍ଯ୍ୟନ୍ତ କେହି ଯେପରି ସେ ଗାର ବାହାରକୁ ନ ଆସନ୍ତି । ଆମକୁ ସବୁ ସେ ତିନିହାଡ଼ରେ ଚୂଲି କରି ମୁଣ୍ଡ ଖପୁରିକୁ ତା'ଉପରେ ବସାଇ ତଳେ କାଠ ଜାଳି ସେ ବିରିକୁ ଭାଜିବାକୁ ହେବ ବୋଲି କହିଲେ । ନିଆଁ ଲାଗିଗଲେ ତାହା ଓହ୍ଲାଇ ଚୂଲି କରିଥିବା ହାଡ଼ ମଧ୍ୟରୁ ଗୋଟିକୁ ଗାର ବାହାରକୁ ପକାଇବାକୁ ହେବ ଓ ଦଶମାଆଙ୍କ ନାମରେ ଦଶଥର (ଦଶ ମା'ଙ୍କ ନାଆ ସେ ଧାଡ଼ିଏ ଶ୍ଲୋକରେ କହିଥିଲେ) ସେ ବିରିରୁ କିଛି ସେ ବାହାର ହାଡ଼ ଉପରକୁ ଫୋପାଡ଼ିବାକୁ ହେବ ଓ ତହିଁ ସଙ୍ଗେ ସଙ୍ଗେ ଏହା ମଧ୍ୟ କହିଲେ ଯେ ଦଶଥର ବେଳକୁ ସବୁ ଫୋପାଡ଼ିବ । କିନ୍ତୁ ମଝିରେ ଯେପରି ବିରି ସରି ନ ଯାଏ । ଏତକ କରି ଭିତରେ ବସିଥିବ । ସେ ଆସି ଆମକୁ ସେଠାରୁ ନେଇଯିବେ । ତା'ପରେ ଆମ ଛଅଜଣଙ୍କୁ ୫୦/୬୦ହାତ ଦୂରରେ ଜଣ ଜଣକରି ବସାଇଦେଇ ଗାର ଟାଣିଦେଲେ ।

ଏଥର ମୋ କଥା କହୁଛି । ମହା ଆନନ୍ଦରେ ସଶଙ୍କ ହୃଦୟରେ ତିନି ହାଡ଼କୁ ଚୂଲି କରି ତାକୁ ଏପାଖ ସେପାଖ କଲି । ଦେଖିଲି ଖପୁରି ତଳେ ନିଆଁ ଲାଗିଗଲା । ଗାମୁଛାରେ ଧରି ଖପୁରି ଓହ୍ଲାଇ ଗୋଟାଏ ହାଡ଼ ବାହାରକୁ ଫୋପାଡ଼ି ଦେଲି । ତା'ପରେ ଗୁରୁଙ୍କର ନିର୍ଦ୍ଦେଶମତେ ମା'ଙ୍କର ନାମ ନେଇ ଯେମିତି କିଛି ବିରି ସେ ହାଡ଼ ଉପରକୁ ଫୋପାଡ଼ିଦେଲି, ଗୋଟାଏ କରେଇ ଚୂଲିରେ ବସାଇ ଗରମ କରି ତା'ଭିତରକୁ ଟିକିଏ ପାଣି ଫୋପାଡ଼ିଦେଲେ ଯେମିତି ଶବ୍ଦ ହୁଏ, ସେହିପରି ଶବ୍ଦ ସେଥିରୁ ବାହାରିଲା । ଚମକି ପଡ଼ିଲି, ଯାହାହେଉ ଖୁବ୍ ଦମ୍ଭ ଧରି ମୁଁ ଛଅ ଥର ପକାଇଛି, ହଠାତ୍ ଆମଭିତରୁ ଜଣେ ''ବାବା ଲୋ ମରିଗଲି'' ବୋଲି ପାଟିକରି ଉଠିଲା । ମୋର ଦମ୍ଭ ଓ ସାହସ ତୁଟିଗଲା । ମୁଁ ମଧ୍ୟ ସେଠାରୁ ଦଉଡ଼ିଲି । ତା'ପରେ କଅଣ ହେଲା ମୁଁ ଜାଣେ ନାହିଁ ।



Digitized by srujanika@gmail.com

ଯେତେବେଳେ ଚେତା ଆସିଲା ଦେଖୁଛି ଗୁରୁ ଆଉ ପାଞ୍ଚଜଣଙ୍କ ସାଥିରେ ଆସି ମୋତେ ତାଙ୍କ ବେଡରେ ବାଡ଼ଉଛନ୍ତି । ମୁଁ ଉଠିଲି ତାଙ୍କ ନିର୍ଦ୍ଦେଶରେ । ସମସ୍ତେ ନଦୀରେ ଗାଧୋଇଲୁ, ସେ ମଧ ଗାଧୋଇଲେ । ଆମକୁ ନେଇ ପ୍ରାୟ ୩ଟା ବେଳେ ହଷ୍ଟେଲରେ ପହଞ୍ଚିଲେ ।

ତହିଁ ପରଦିନ ଆମକୁ ଭୀଷଣ ଗାଳିଦେଲେ, ''ଯାହାର ଏତିକି ସାହସ ନାହିଁ ଓ ଗାର ବାହାରକୁ ନ ଯିବାପାଇଁ କହିଥିବା ସତ୍ତ୍ୱେ ଭୁଲିଯାଇ ଏ ବିପଦ ଡାକି ଆଣେ ତା'ଦ୍ୱାରା କିଛି ହେବ ନାହିଁ । ତୁମେମାନେ ଏଥିପାଇଁ ଯୋଗ୍ୟ ନୁହଁ ।'' ସମସ୍ତେ ମନ ଦୁଃଖରେ ଫେରିଗଲେ । ପରେ ମୁଁ ତାଙ୍କୁ ଦେଖାକରି କହିଲି, ମୁଁ ଡରି ନାହିଁ, କିଏ ପାଟି କରି ଉଠିଲା ବୋଲି ମୁଁ ଚମକି ପଡ଼ିଲି । ମୋତେ ଦୟା କରିବାପାଇଁ ପ୍ରାର୍ଥନା କଲି । ସେ କହିଲେ ମୁଁ ଜାଣେ, ବର୍ତ୍ତମାନ କିନ୍ତୁ ସମ୍ଭବ ନୁହେଁ । ଆଉ ଥରେ ସେ ଆସିଲେ ବିଚାର କରିବାପାଇଁ କହି ସେହିଦିନ ଚାଲିଗଲେ । ସେ ଚାଲିଗଲାପରେ ପଦ୍ମନାଭକୁ ସବୁ କଥା କହିଲି ଓ ଗୁରୁ ପୁଣି ଆସିଲେ ମୋପାଇଁ ଟିକିଏ କହିବାପାଇଁ ଅନୁରୋଧ କରି ରଖିଲି । ପ୍ରାୟ ମାସେ କି ଦେଢ଼ମାସ ପରେ ଗୁରୁ ଆସିଲେ । ମୁଁ ଧରି ବସିଲି, ପଦ୍ମନାଭ ମଧ ମୋପାଇଁ କହିଲା । ଶେଷରେ କହିଲେ ବଡ଼ ରକମ ସାଧନା କରିବାପାଇଁ ବୟସ ହୋଇ ନାହିଁ । ତୁମେ ଯେମିତି ସବଳ ହୃଷ୍ଟପୁଷ୍ଟ ତୁମକୁ ଗୋଟିଏ ମନ୍ତ୍ର ଦେବି, ତାହା ସାଧନା ଶେଷ ହେଲେ ତୁମର ମାନସିକ ଶକ୍ତି ବଢ଼ିଯିବ ଓ ଶତ୍ରୁ ତୁମର କିଛି କରିପାରିବ ନାହିଁ । ପ୍ରତି ଶନିବାର ମଙ୍ଗଳବାର ଅର୍ଦ୍ଧ ରାତ୍ରରେ ଶ୍ମଶାନରେ ନ ହେଲେ ଖୁବ୍ ନିର୍ଜନ ସ୍ଥାନରେ ସେ ମନ୍ତ୍ରକୁ ଶହେ ଥର ଜପ କରିବାକୁ ହେବ ଓ ନିଜ ଅଙ୍ଗର ଯେ କୌଣସି ସ୍ଥାନରୁ ରକ୍ତ ବାହାର କରି ପୂଜାଭୋଗ ଦେବାକୁ ହେବ । ଦୁଇ ବର୍ଷର ସାଧନା । ଗୋଟିଏ ଦିନ ଠିକ୍ କରି ଶଶ୍ମାନରେ ମୋତେ ନେଇ ଯଥାରୀତି ମନ୍ତ୍ରଦାନ କଲେ, ଗୋଟିଏ ପଇତା ପିନ୍ଧାଇ ଦେଲେ । କହିଲେ ଗୋଟାଏ ଶହେ କଣ୍ଠି ଥିବା ମାଳି କରି ମନ୍ତ୍ର ଜପିବାକୁ ପ୍ରତି ଶନି ଓ ମଙ୍ଗଳବାର ରାତିରେ । ଆଜିଠାରୁ ଯେଉଁଦିନ ମନ ହେବ ସେହି ଶନି ଓ ମଙ୍ଗଳବାରରେ ଆରମ୍ଭ କରିବାକୁ । ମୁଁ କିନ୍ତୁ ସେହିଦିନଠାରୁ ତାଙ୍କର ସମ୍ମୁଖରେ ଜପ ଆରମ୍ଭ କଲି । ସାଥିରେ ଛୁରିଥାଏ । ମନ୍ତ୍ର ଜପ ପରେ ଡାହାଣ ହାତରେ ଛୁରିଧରି ତାଙ୍କର କହିବା ମୁତାବକ ବାମ ହାତରେ ଗୋଟିଏ ଗାର ଟାଣିଦେଲି । ରକ୍ତ ବାହାରିଲା, ରକ୍ତ ପୋଛିନେଇ ନିର୍ଦ୍ଦେଶମତେ ପୂଜାଭୋଗ ଦେଲି । ସେ କହିଲେ ଭୟ କରିବ ନାହିଁ । ହାତରେ ଘାଆ ହେବ ନାହିଁ । ଏ ଛୁରିରେ ଆଉ କିଛି କରିବ ନାହିଁ । ଏହା କେବଳ ଏହି କାମପାଇଁ ରହିଲା । ଆଜିଠାରୁ ମୋର ଆଉ ଦେଖା ପାଇବ ନାହିଁ । ସାଧନା ପୂର୍ଣ୍ଣ ହେଲେ ଦେଖା ହେବ, ନଚେତ୍ ଏଇ ଶେଷ । ମୋତେ ସାଥିରେ ଆଣି ହଷ୍ଟେଲରେ ଛାଡ଼ି ଦେଇ ସେ ଚାଲିଗଲେ । ମୁଁ କାଳିଆବୋଦାକୁ ନ ଯାଇ କାଠଯୋଡ଼ି ବାଲିକୁ ଯାଇ ଶନିବାର ଓ ମଙ୍ଗଳବାରରେ ଜପ କରେ । କିନ୍ତୁ ଆଶ୍ଚର୍ଯ୍ୟ କଥା ଛୁରିରେ କାଟିବା ସତ୍ତ୍ୱେ ସକାଳେ ହାତରେ ଗୋଟାଏ ନାଲି ଗାରପରି ଦାଗ ଥାଏ, ଆଉ କିଛି ନ ଥାଏ । କେବେ ଦରଜ ବା



Digitized by srujanika@gmail.com

ଘା' ହୋଇ ନାହିଁ । ମୁଁ ସେ ସମୟରେ ଦଣ୍ଡ ବୈଠକ ଓ ବାର ଏକ୍ସରସାଇଜ ନିୟମିତ କରୁଥାଏ । ଦେହରେ ଏତେ ବଳ ଥାଏ ଯେ, ଯେ କୌଣସି ବୟସର ପିଲା ମଧ୍ୟ ମୋ ସହିତ ବଳ କଷାକଷି କରି ହାରି ଯାଉଥିଲେ ।

ଗାଡ଼ି ବନ୍ଦ ହେଲା । କଟକ ଷ୍ଟେସନ । ନାନା କୋଳାହଳ । ଚା ପାଇଁ ବରାଦ୍ ଦେଲି ଚା ଆସିଲା । ମୁଁ ଓ ସେ ଭଦ୍ରଲୋକ ଚା ପିଇଲୁ । ପାନ ଚାରିଟା କିଣି ଖାଇଲି । ମୋ ନିକଟରେ ଘରଭଙ୍ଗା ପାନ ଥିଲେ ମଧ୍ୟ ଟିକିଏ ସ୍ୱାଦୁ ବଦଳାଇବାପାଇଁ । କଟକ ଷ୍ଟେସନ ପ୍ଲାଟଫର୍ମ ସତରେ ଓଡ଼ିଶାର ସାମାଜିକ ଜୀବନର ପ୍ରତିବିମ୍ବ କହିଲେ ଚଳିବ । ଟ୍ରେନ୍ କେତେ ସମୟ ରହିଲା ଠିକ୍ ନାହିଁ । ଯାତ୍ରୀଙ୍କପାଇଁ ସରକାରୀ ବେସରକାରୀ ଲୋକଙ୍କ ବ୍ୟସ୍ତତା ଦେଖିବାର କଥା । ପ୍ରଥମ ଘଣ୍ଟା ବାଜିଲା । ବ୍ୟସ୍ତତା କମିଗଲା ତା'ପରେ ଘଣ୍ଟା, ଗାର୍ଡ୍ ହୁଇସିଲ, ଶାଗୁଆ ବତି, ଗାଡ଼ିର ଗମ୍ଭୀର ରବ ଓ ଧୀର ଚଳନ, ଗାଡ଼ିର ଗତି ବଢ଼ିଲା । କଟକର ମାଲଗୋଦାମ ରାସ୍ତା, ମଧୁପାଟଣା, ତା'ପରେ କାଠଯୋଡ଼ି ପୋଲ, ଏହି କାଠଯୋଡ଼ି ନଦୀ ପାଖରେ କାଠଯୋଡ଼ି ହଷ୍ଟେଲ..... ।

ହଠାତ୍ ଗୋଟିଏ ଘଟଣା ମନେ ପଡ଼ଗଲା । ଦିନେ ସକାଳେ କେତେଜଣ ପିଲାଙ୍କ ସହ ନଦୀକୁ ଗଲୁ । କାଠଯୋଡ଼ିରେ ବହୁତ ଚୋରାବାଲି, ଏଣୁ ନଦୀ ପାରିହୋଇ,(ନଦୀରେ ଆଣ୍ଠୁଏ ପାଣି) ବାଲିକୁ ଯିବା ଆଗରୁ ଏ ପଟରୁ ନେଇଥିବା ଖଣ୍ଡିଏ ପଥର ବାଲି ଉପରକୁ ଫୋପାଡ଼ି ଦେଲେ ବାଲିଟା ଶକ୍ତ ହୋଇଯାଏ, ଆମେ ପାଦ ପକାଇ ଚାଲିଯାଉ । ସେଦିନ ପାଣିରୁ ଉଠି ପାଦ ପକାଇ ଦେଲି, ହଠାତ୍ ଜଙ୍ଘ ପର୍ଯ୍ୟନ୍ତ ବୁଡ଼ିଯିବାରୁ ଅଣ୍ଟା ଭାଙ୍ଗି ପେଟ ଉପରେ ଶୋଇ ପଡ଼ିଲି, ଦେହର ପ୍ରେସର୍‌ରେ ଅଟକି ଗଲି ଆଉ ଭିତରକୁ ଗଲି ନାହିଁ । ତା'ପରେ ତଳ ପେଟ ଓ ଜଙ୍ଘରେ କି କଷ୍ଟ, ଚାରିଆଡୁ ବାଲି ଚାପି ହୋଇଗଲା । ମୁଁ ଡାକ ଛାଡ଼ିଲି, ପିଲାମାନେ ଦଉଡ଼ି ଆସି ହଠାତ୍ ବାଲି ଖୋଳି ମୋତେ ବାହାର କଲେ । ବାଲିରୁ ବାହାରି ଦଣ୍ଡେ ବସି ରହିଲି । ତା'ପରେ ଚାଲିଲି ଅବଶ୍ୟ କଷ୍ଟରେ । ଭଗବାନ ସୁବୁଦ୍ଧି ଦେଲେ ମୁଁ ଶୋଇ ପଡ଼ିଥିଲି ବାଲି ଉପରେ, ନଚେତ୍ ଜୀବନ ଶେଷ ହୋଇଯାଇଥାନ୍ତା ସେଦିନ ।

ସେ ସମୟରେ କଟକରେ ସିନେମା ତ ନ ଥାଏ, ଥିଏଟର ମଧ୍ୟ ଖୁବ୍ କମ୍ । ବାସନ୍ତୀ ପେଣ୍ଡାଲ୍‌ରେ କେବେ କେମିତି ଥିଏଟର ହୁଏ । ଦିନେ ସେଠାରେ ଗୋଟାଏ ଥିଏଟର ହେଉଥାଏ କି ଯାତ୍ରା ଠିକ୍ ମନେ ନାହିଁ । ଯାହାହେଉ ପୌରାଣିକ । ଥିଏଟର ଦେଖିବାପାଇଁ ସୁପରିଣ୍ଟେଣ୍ଡେଣ୍ଟଙ୍କୁ ଅନୁମତି ମାଗିଲୁ । କେତେକ ପାଇଲେ କେତେକ ପାଇଲେ ନାହିଁ । ନ ପାଇବା ମଧ୍ୟରେ ମୁଁ ଜଣେ । ଖାଇପିଇ ସେମାନେ ଥିଏଟର ଦେଖିବାକୁ ଗଲେ । ହଷ୍ଟେଲର ଉପର ତାଲାରୁ ତଳକୁ ଆସିବାପାଇଁ ଦୁଇ କୋଣରେ ଦୁଇଟି ଶିଡ଼ି । ଉପରୁ ଦରଜା ବନ୍ଦ କରିଦେଲେ ଆଉ ତଳକୁ ଯାଇହେବ ନାହିଁ ।



Digitized by srujanika@gmail.com

ଦରଓ୍ୱାନ ଆସି ପିଲାଙ୍କ ଯିବାପରେ ଦୁଇଟା ଦରଜା ବାହାରୁ ବନ୍ଦ କରିଦେଲା । ପିଲାମାନେ ଯିବାର ପ୍ରାୟ ଘଣ୍ଟାକ ପରେ ମୁଁ ପାଣି ପାଇପ୍ ଧରି ଧୀରେ ଧୀରେ ତଳକୁ ଓହ୍ଲାଇଲି । ପାଚେରିକୁ ଲାଗି ବାହାରପଟେ ଗୋଟେ ପଣସ ଗଛ ଥାଏ । ସେହିଠାରେ କୁଦାମାରି ପାଚେରି ଉପରେ ଚଢ଼ି ପଣସ ଗଛ ଦେଇ ତଳକୁ ଓହ୍ଲାଇ ଦଉଡ଼ିଲି ବାସନ୍ତୀ ପେଣ୍ଡାଲକୁ । ଭିତରକୁ ଯାଇ ଆମ ପିଲାମାନଙ୍କୁ ଦେଖିଲି ଓ ତାଙ୍କଠାରୁ ଦୂରରେ ବସି ଥିଏଟର ଦେଖିଲି । ଶେଷ ହେବା ସଙ୍ଗେ ସଙ୍ଗେ ପଳାଇ ଆସି ଯେଉଁ ବାଟ ଦେଇ ଯାଇଥିଲି ସେହି ବାଟେ ଆସି ନିଜ ବିଛଣାରେ ଶୋଇ ପଡ଼ିଲି । ମୋର ଆସିବାର ପ୍ରାୟ ଅଧଘଣ୍ଟାପରେ ଅନ୍ୟ ପିଲାମାନେ ଆସିଲେ । ଦରଓ୍ୱାନ୍ ଆସି ଶିଡ଼ି ଦରଜା ଖୋଲିଦେଲା । ତହିଁ ପରଦିନ ସକାଳେ ଯେଉଁମାନେ ଥିଏଟର ଦେଖିଥିଲେ ସେମାନଙ୍କର ଆଲୋଚନା ସହିତ ଯେତେବେଳେ ମୁଁ ମଝିରେ ମଝିରେ ଯୋଗ ଦିଏ ସେମାନେ "ମୁଁ ତ ଦେଖି ନାହିଁ ଲମ୍ବା ଲମ୍ବା କଥା କେମିତି କହୁଛି" ବୋଲି ପଚାରନ୍ତି । ମୁଁ କଳ୍ପନାରେ ସବୁ ଜାଣୁଛି ବୋଲି କହେ । ସେମାନେ ଥିଏଟରର ଗୋଟିଏ ଗୋଟିଏ ବିଶେଷ ଘଟଣା କଥା ପଚାରିଲେ ମୁଁ ଠିକ୍ ଠିକ୍ କହିଦେଉଥାଏ । ଏଥିରେ ମୁଁ ଥିଏଟର ଦେଖିଛି ବୋଲି ସେମାନଙ୍କର ସନ୍ଦେହ ହେଲା । ଭିତରେ ଭିତରେ ଗୌରାଙ୍ଗ ବାବୁ ସୁପରିଣ୍ଟେଣ୍ଡେଣ୍ଟ ଇନ୍‌କ୍ୱାରି ମଧ କଲେ । କିନ୍ତୁ ମୁଁ ଯାଇଥିବାର କିଛି ପ୍ରମାଣ ପାଇଲେ ନାହିଁ । କଥା ସେଇଠି ରହିଲା ।

ଆଉ ଦିନକର କଥା । ହଷ୍ଟେଲର ଉପରତାଲାରେ ଛାତ ଉପରେ ମାତ୍ର ଦେଢ଼ଫୁଟ ଉଚ୍ଚର ଗୋଟିଏ ପାରାପେଟ୍ ଥିବାରୁ କାଳେ କେହି ପଡ଼ିଯିବେ ବୋଲି ଉପରକୁ କାହାରିକୁ ଯିବାକୁ ବାରଣ ଥାଏ । ହଷ୍ଟେଲର ପଛ ପାଖରେ ଉପରକୁ ଯିବାପାଇଁ ଗୋଟିଏ ଗୋଲାକାର ଲୁହାଶିଡ଼ି ଥାଏ । ମୁଁ ସନ୍ଧ୍ୟା ପରେ ଖରାଦିନେ ସେହି ଶିଡ଼ିବାଟେ ଯାଇ ଉପରେ କିଛି ସମୟ ବସେ । ଦିନେ ମୁଁ ସ୍କୁଲରୁ ଆସି କିଛି ସମୟ ପରେ ଉପରକୁ ଚାଲିଗଲି । ସେଠାରେ ଥିବା ଅବସ୍ଥାରେ ଦୃଷ୍ଟି ପଡ଼ିଲା । ରାଧାକୃଷ୍ଣ ବାବୁ ଖୁବ୍ ଜୋର୍‌ରେ ଆସୁଛନ୍ତି । ମୁଁ ବୁଝିନେଲି ଯେ ମୋତେ ଉପରେ ଦେଖି ସେ ଆସୁଛନ୍ତି । ତାଙ୍କୁ ନ ଦେଖିଲାପରି ମୁଁ ଲକ୍ଷ୍ୟ କରି ଠିଆ ହୋଇଥାଏ । ସେ ସିଧା ଆସି ହଷ୍ଟେଲ ଭିତରେ ପଶିଲେ, ମୁଁ ଜାଣେ ସେ ସେହି ପଛ ଶିଡ଼ିକୁ ଯାଉଛନ୍ତି । ମୁଁ ଏଣୁ ଆର ପାଖରେ ପାଣି ପାଇପ ଧରି ଦୋତାଲା ବାରନ୍ଦାରେ ଓହ୍ଲାଇ ମୋ ରୁମ୍‌ରେ ଯାଇ ବିଛଣାରେ ଶୋଇପଡ଼ି ପାଖରେ ଥିବା ଗୋଟିଏ ବହି ଧରି ପଢ଼ିବା ଆରମ୍ଭ କରିଦେଲି । ରାଧାକୃଷ୍ଣ ବାବୁ ଶିଡ଼ି ପାଖକୁ ଆସି ଦୁଇଜଣ ପିଲାଙ୍କୁ ଉପରେ କିଏ ଅଛି ଦେଖିବାକୁ ପଠାଇଲେ । ସେ ଉପରକୁ ଯାଇ କେହି ନ ଥିବାର ଆସି କହିବାରୁ ସେ ଆଶ୍ଚର୍ଯ୍ୟ ହେଲେ । ସେ ନିଜେ ବହୁ କଷ୍ଟରେ ଉପରକୁ ଯାଇ କାହାରିକୁ ନ ଦେଖି ତଳକୁ ମୋ ରୁମ୍‌କୁ ଆସିଲେ । ସାଥିରେ ଆଠ ଦଶ ପିଲା । ଏମାନଙ୍କୁ ଦେଖି ମୁଁ ଆଶ୍ଚର୍ଯ୍ୟ ହେଲା ପରି ଠିଆ ହୋଇପଡ଼ିଲି । ରାଧାକୃଷ୍ଣ ବାବୁ କିଛିକ୍ଷଣ ମୋତେ ଚାହିଁ ମୁଁ ଉପରକୁ ଯାଇଥିଲି କି



Digitized by srujanika@gmail.com

ନାହିଁ ପଚାରିଲେ । ମୁଁ ସିଧା ମନା କଲି, ''ହଷ୍ଟେଲ ବାରନ୍ଦା ପର୍ଯ୍ୟନ୍ତ ତୁମକୁ ଛାତ ଉପରେ ଦେଖିଛି ଓ ମୁଁ ନିଜେ ଯାଇ ଶିଡ଼ି ପାଖରେ ଠିଆ ହୋଇଛି । ତୁମେ ଉପରୁ ତଳକୁ କେମିତି ଆସିଲ ?'' ମୁଁ କହିଲି ''ଆଜ୍ଞା ମୁଁ ତ ଯାଇ ନାହିଁ ଆଉ କେହି ମଧ ଛାତକୁ ଯାଇ ନାହାନ୍ତି । ଆପଣ ବୁଢ଼ା ହୋଇଗଲେଣି, ଉପରେ ଯେଉଁ ଚିମ୍‌ନି ଅଛି ସେଇଆକୁ ଦେଖି ଭୁଲ ଭାବିଛନ୍ତି ।'' ବୁଢ଼ା ରାଗିଗଲେ, କହିଲେ-''ମୁଁ ନିଶ୍ଚୟ ତୁମକୁ ଦେଖିଛି । କିନ୍ତୁ ତୁମେ ଏତେ ଶୀଘ୍ର କେମିତି ଆସିଲ କୁହ !'' ମୁଁ କିନ୍ତୁ ମାନୁ ନ ଥାଏ । ଶେଷରେ ସେ ଅନୁନୟ କରି ସତ କଥା କହିବାପାଇଁ କହିଲେ ଓ କିଛି ଦଣ୍ଡ ଦେବେ ନାହିଁ ବୋଲି କହିଲେ । ମୁଁ ତହୁଁ ସମସ୍ତଙ୍କୁ ତଳକୁ ଯାଇ ସାମନା ପଡ଼ିଆରେ ଠିଆ ହେବାପାଇଁ କହିଲି ଓ ମୁଁ କେମିତି ତଳକୁ ଯିବି ଦେଖାଇ ଦେବି ବୋଲି କହିଲି । ସମସ୍ତେ ଯେମିତି ଶିଡ଼ି ମୁହଁରେ ପହଞ୍ଚିଲେ ମୁଁ ସେ ପାଇପ୍ ଧରି ତୁରନ୍ତ ତଳକୁ ଓହ୍ଲାଇ ଯାଇ ସେମାନେ ପହଞ୍ଚିବା ପୂର୍ବରୁ ଯାଇ ପଡ଼ିଆରେ ଠିଆ ହୋଇଥାଏ । ମତେ ଦେଖି ପିଲାମାନେ ପାଟି କରି ଉଠିଲେ । ରାଧାକୃଷ୍ଣ ବାବୁଙ୍କର ପାଦ ଅଟକି ଗଲା । ସେ ଆଁ କରି ଠିଆ ହୋଇଗଲେ ।'' ତୁ କଅଣ ମ୍ୟାଜିକ୍ ଜାଣୁ କି ? ମୋତେ କହ କେମିତି ଏ ସବୁ କରୁଛୁ ।'' ମୁଁ ତାଙ୍କର ଅବସ୍ଥା ଦେଖି ତାଙ୍କୁ ସେଠାରେ ରହିବାପାଇଁ କହି ଉପର ବାରନ୍ଦାକୁ ଶିଡ଼ି ବାଟେ ଯାଇ ଯେତେବେଳେ ସେ ପାଣି ପାଇପ୍ ଦେଇ ସର୍‌ସର୍ କରି ଓହ୍ଲାଇ ଆସିଲି, ସେ ଦୌଡ଼ିଆସି ମୋତେ କୁଣ୍ଢାଇ ପକାଇ କହିଲେ ''ବାପ, ତୋର ଯେତେବେଳେ ଇଚ୍ଛା ଛାତ ଉପରକୁ ଯିବୁ ତତେ ମନା ନାହିଁ । କିନ୍ତୁ ଏ ପାଇପ୍ ଦେଇ ଓହ୍ଲାଇବୁ ନାହିଁ । ତୁ ତ ଯିବୁ, ଏ ବୁଢ଼ାକାଳେ ମୋ ଚାକିରି ବି ଯିବ ।'' ଏମିତି ବହୁ ଅନୁରୋଧ କରି ସମସ୍ତଙ୍କୁ ନେଇ ଫେରିଗଲେ ।

ସେତେବେଳେ ମୁଁ ବେଶ ଶକ୍ତିମାନ, ଦଣ୍ଡ ବୈଠକ ଓ ବାର ଏକ୍ସରସାଇଜରେ ଦେହ ସୁପୁଷ୍ଟ । ଆମ ସ୍କୁଲର ଭଲ ଫୁଟବଲ ଖେଳୁଆଡ଼ । ଆମ ସ୍କୁଲରେ Class Competition Match ଚାଲିଥାଏ । ଯେଉଁଦିନର ଘଟଣା କହୁଛି ତା'ପରଦିନ ଆମ ଶ୍ରେଣୀ ସହିତ ଏକାଦଶର ଖେଳ ଥାଏ । ସେ ଦିନ ସକାଳେ ନିଦ ଭାଙ୍ଗିଲା ପରେ ମୁଁ ଦେଖେ ଯେ ମୋର ଦେହର ଅଙ୍ଗ ପ୍ରତ୍ୟଙ୍ଗ ଅଚଳ ହୋଇଯାଇଛି । ହାତ ଗୋଡ଼ ସ୍ଥିର । ମୋର ଏ ଅବସ୍ଥା କଥା ମୋ ରୁମ୍‌ର ପାଖ ସିଟ୍‌ର କ୍ଷେତ୍ରମୋହନ ବୈଶାଖକୁ କହିଲି । ସେ ରାଧାକୃଷ୍ଣ ବାବୁଙ୍କୁ କହି ଡାକି ଆଣିଲା । ସେ ମୋର ଏ ଅବସ୍ଥା ଦେଖି କାନ୍ଦି ପକାଇଲେ । ଡାକ୍ତର ଡକାଗଲା । ସେ ଆସିଲେ, ପରୀକ୍ଷା କଲେ, ଚିମୁଟିଲେ । ମୁଁ କହିଲି ମୁଁ ସବୁ ଶୁଣୁଛି, ଦେଖୁଛି, କେବଳ ମୋର ହାତ ଗୋଡ଼ ଦେହ ଚଳୁ ନାହିଁ । ସେ ନାନାଦି ଔଷଧର ବ୍ୟବସ୍ଥା କରି ଗଲେ । ଗୋଟାଏ କଅଣ ଦେହରେ ମାଲିସ୍ କରିବାପାଇଁ ଦେଲେ, ମୁଁ ଶୋଇ ପଡ଼ିଲି । ତହିଁ ପରଦିନ ନିଦ ଭାଙ୍ଗିଲାରୁ ଜଣାଗଲା ଯେପରି ଦେହଟା ଆଗଦିନ ଭଳି ପଥର ପରି ଲାଗୁ ନାହିଁ । ଟିକିଏ ହାଲୁକା ଲାଗୁଛି । ସେ ଦିନ ଡାକ୍ତର ଆସି ମୋତେ ଦେଖି ଓ ପରିବର୍ତ୍ତନ ଦେଖି କହିଲେ ଦିନେ ଦୁଇଦିନ ମଧରେ ଭଲ ହୋଇଯିବ । ମୋତେ ସେଦିନ ସମସ୍ତେ



Digitized by srujanika@gmail.com

ଧରି ବସାଇଲେ, ମୁଁ ବସି ପାରୁଥିଲି । କିନ୍ତୁ ହାତ ଗୋଡ଼ ଅଚଳ ଥାଏ । ଚାରିଟା ବାଜିଲା, ପିଲାମାନେ ସ୍କୁଲରୁ ଆସିଲେ । ମୁଁ ଅନୁରୋଧ କଲି, ମୁଁ ତ ଖେଳି ପାରିଲି ନାହିଁ, ମୋତେ ବୋହିନିଅ ମୁଁ ଖେଳ ଦେଖିବି । କ୍ଲାସ ପିଲାମାନେ ମୋତେ ଦେଖି ବହୁତ ଦୁଃଖ କଲେ । ଗୋଟାଏ ଟୁଲ୍ ଆଣି ରଖିଦେଇ ମୋତେ ଧୀରେ ତା' ଉପରେ ବସାଇ ଦେଲେ । ଜଣେ ପଛରୁ ମୋ କାନ୍ଧ ଉପରେ ହାତ ରଖି ଛିଡ଼ା ହୋଇଥାଏ । ମୋର ବୁହା ହୋଇ ପଡ଼ିଆକୁ ଯିବା କଥା ଶୁଣି ରାଧାକୃଷ୍ଣ ବାବୁ ଦରୱାନ୍‌କୁ ସାଥିରେ ନେଇ ଠିକ୍ ମୋର ପାଖାପାଖି ପହଞ୍ଚିଥାଆନ୍ତି । ଏହି ସମୟରେ ପିଲାମାନେ ତ ଖେଳପୂର୍ବରୁ ସଟ୍ ମାରି ପ୍ରାକ୍ଟିସ୍ କରୁଥାନ୍ତି । ଗୋଟାଏ ବଲ ଆସି ମୋ ମୁଣ୍ଡରେ ବାଜିଲା । ମୁଁ ତଳେ ଢଳି ପଡ଼ିଲି, ମରିଗଲା ମରିଗଲା ବୋଲି ରାଧାକୃଷ୍ଣ ବାବୁ ପାଖକୁ ଦଉଡ଼ି ଆସିଲେ । ପିଲାମାନେ ମଧ୍ୟ ଘେରିଗଲେ । କିନ୍ତୁ ଆଶ୍ଚର୍ଯ୍ୟ, ମୁଁ ହଠାତ୍ ତଳୁ ନିଜେ ଉଠି ପଡ଼ିଲି । ଦେଖିଲି ହାତ ଗୋଡ଼ରେ ଆଉ କିଛି ସ୍ଥାଣୁତା ନାହିଁ । ମୁଁ ସଚଳ । ମୋତେ ରାଧାକୃଷ୍ଣ ବାବୁ କୁଣ୍ଢାଇ ପକାଇଲେ । ମୁଁ ଖେଳିବାପାଇଁ ବାହାରିଲି । ସେ କିନ୍ତୁ କିଛି ନ ଶୁଣି ମୋତେ ଧରି ନେଇ ଆସିଲେ । ଡାକ୍ତରଙ୍କୁ ଡକାଇଲେ, ସେ ଆସି ପରୀକ୍ଷା କରି ସମସ୍ତ ଘଟଣା ଶୁଣି କହିଲେ ପବନ କେଉଁଠି ଅଟକି ଯାଇଥିଲା । ସେ ଫୁଟବଲ୍ ସଟ୍ ଲାଗିଲାରୁ ତାହା ଭଲ ହୋଇଗଲା । ଆଉ କେବେ ମୋର ସେପରି ହୋଇ ନ ଥିଲା । ପରେ ପୁଣି ସେଇ ଅବସ୍ଥା ଦେଖା ଦେଇଥିଲା, ମୋର ସାଧନା ଭଙ୍ଗ ହେବାପରେ ।

ହଠାତ୍ ମୋ ରୁମ୍‌ରେ ଥିବା କ୍ଷେତ୍ରମୋହନ ବୈଶାଖ କଥା ମନେ ପଡ଼ିଲା । ଗୋଟିଏ ସୌଖିନ୍ ପିଲା, ବେକରେ ସୁନାହାର, ଦୁଇ ହାତରେ ଚାରି/ଛଅଟା ମୁଦି । ଖୁବ୍ ପରିଷ୍କାର ପରିଚ୍ଛନ୍ନ, ସକାଳୁ ଗାଧୋଇ ଆସି ଜଳଖିଆ ଖାଇ ପାନ ବାକ୍ସଟି ବାହାର କରେ । ଛାଚିପାନ, ପାର୍ବତୀ ମା ଗୁଣ୍ଡି,(ତତ୍‌ସମୟରେ ଯାଜପୁରର ପାର୍ବତୀ ମା ଗୁଣ୍ଡିର ଖୁବ୍ ନାମ ଥିଲା-କେବଳ ଧଣିଆ ଚାଉଳ ଭଳି ଦେଖିବାକୁ, କିନ୍ତୁ କଡ଼ା ଓ ବାସନାରେ ଭରପୂର) କେତକୀ ଖଇର, ନାନା ପ୍ରକାର ମସଲା ସେ ବାକ୍ସରେ ଥାଏ । ସକାଳୁ ୨୦/୩୦ଖଣ୍ଡ ପାନ ଭଙ୍ଗାହୁଏ । ମୋତେ ପ୍ରଥମେ ସାଦା ପାନ ପରେ ପରେ ଟିକିଏ ଟିକିଏ ଗୁଣ୍ଡିଦେଇ ପୂରା ପାନଖୋର କରିଦେଲା ସେ । ଗୁଡ଼ାଖୁ ଘଷିବା ମଧ୍ୟ ସେହି ତାରି ଦୟାରୁ । ସେ ଅଭ୍ୟାସ ଏବେ ବି ମୋର ରହିଛି । ମୁଁ ସେ ସମୟରେ ସିଗାରେଟ୍ ମଧ୍ୟ ଖାଉଥିଲି । State Express, 999 ପ୍ରତିଦିନ ଗୋଟାଏ ଟିଣ (୫୦ଟା) ଖାଉଥିଲି । ଚା ମଧ୍ୟ ପିଏ । ରାତି ବାରଟା ଗୋଟାଏ ବେଳେ ଷ୍ଟୋଭ ଜଳାଇ ଚା କରି ପିଏ ଓ ମୋର ପଢ଼ା ଆରମ୍ଭ କରେ । ଯେଉଁଦିନ କଟକ ଛାଡ଼ି ଭଦ୍ରଖ ଆସିଲି, ଭଦ୍ରଖ ଷ୍ଟେସନରେ ଓହ୍ଲାଇ ଚା କପେ ପିଇଲି ଓ ଗୋଟାଏ ହେଭେନା ସିଗାର୍ ଲଗାଇ ବଳଦ ଗାଡ଼ିରେ ବସିଲି ଘର (ସାହାପୁର) ଅଭିମୁଖେ ।



Digitized by srujanika@gmail.com

ବର୍ଷା ଦିନ, ବର୍ଷା ହେଉଥାଏ । ଠିକ୍ ଗାଁ ମୁଣ୍ଡରେ ପହଞ୍ଚି ବାକି ରହିଥିବା ଅପୋଡ଼ା ସିଗାର୍ ଫୋପାଡ଼ି ଦେଲି । ଗାଁରେ ତ ମୁରବି ସମସ୍ତେ । ତାଙ୍କ ଆଗରେ ସିଗାର୍ ଚଳିବ ନାହିଁ । ଏଣୁ ସେହି ମୁହୂର୍ତ୍ତରେ ସେ ଦୁଇଟି ତ୍ୟାଗ କଲି । ଏ ପର୍ଯ୍ୟନ୍ତ ମୁଁ ସିଗାରେଟ୍ ଖାଏନା । ଚା ବୋଧହୁଏ ପୁଣି ସନ ୧୯୪୦/୪୧ ସାଲରେ ଆରମ୍ଭ ହେଲା । ଏ ପର୍ଯ୍ୟନ୍ତ ମୁଁ ଚା ପିଉଛି । ପାନ ବନ୍ଦ ନାହିଁ, ବର୍ତ୍ତମାନ ସେଇ ୨୦/୩୦ରୁ ବଢ଼ି ୫୦/୬୦ ପହଞ୍ଚିଛି ।

ଆମ ସ୍କୁଲରେ ଗଣେଶ ପୂଜା ସମୟରେ ଗୋଟେ ଥିଏଟର ହୋଇଥିଲା 'ସୁଦାମା ।' ମୁଁ ସୁଦାମା ପାର୍ଟ ନେଇଥିଲି ଓ ଜଣେ ବନ୍ଧୁ ଜଗନ୍ନାରାୟଣ ପ୍ରତିହାରୀ ସୁମତୀ ହୋଇଥିଲା । ସେ ଥିଏଟରରେ ମୁଁ ସୁନାମ ଅର୍ଜନ କରିଥିଲି । ତାହା ବୋଧହୁଏ ଈଶ୍ୱରଦତ୍ତ ଗୁଣ ଥିଲା । କାରଣ ସୁଦାମାର ଯେଉଁ ଗୀତମାନ ଥିଲା ତାହା ଶିଖିବାକୁ ମୋତେ କେବଳ ଦୁଇ ଦିନ ଲାଗିଥିଲା । ସେହିଦିନୁ ସଙ୍ଗୀତ ପ୍ରତି ମୋର ଗୋଟାଏ ଆକର୍ଷଣ ରହିଗଲା । ଭଦ୍ରଖରେ ସ୍ୱଦେଶୀ କବି ଶ୍ରୀ ବାଞ୍ଛାନିଧି ଦାସଙ୍କ ଭାଇ ପ୍ରେମ୍‌ଙ୍କଠାରୁ ଅନେକ ଗୀତ ଶିଖିଥିଲି ଓ ଗାଇଥିଲି । ମୋର ଗୀତ ଖାତାରେ ପ୍ରାୟ ତିନି ଚାରିଶହ ଗୀତ ଥିଲା । କିନ୍ତୁ ସେଠାରେ ଥିବା ସମୟରେ କୌଣସି ସମୟରେ ତାହା ହଜିଗଲା । ବର୍ତ୍ତମାନ ମନେ ପଡ଼ିଲେ ଦୁଃଖ ଲାଗେ ।

କ୍ଲାସ ପ୍ରମୋଶନ ପରୀକ୍ଷା ଫଳ ବାହାରିଲା । ମୁଁ ଭଲ ନମ୍ବର ରଖି ପାଶ୍ କଲି । ତା'ପରେ ଘରକୁ ଆସି ଆଉ କଟକ ଯାଇନି । ଭଦ୍ରଖ ସ୍କୁଲରେ ନାମ ଲେଖାଇଲି । ଆମ ଗାଁ ସାହାପୁର ଓ ଟାଉନ ମଝିରେ ନଦୀ । କେବଳ ବର୍ଷା ଦୁଇ ମାସ ଡଙ୍ଗାରେ ପାରି ହୁଅନ୍ତି । ଅନ୍ୟ ଦିନେ ନଦୀରେ ପଶି ଯିବା ଆସିବା ହୁଏ । ନଦୀପାଇଁ ଭୟ କରି ବାବାଙ୍କ ନିର୍ଦ୍ଦେଶରେ ଆମ ବଂଶର ବଡ଼ଭାଇ 'ଶରତଭାଇ' ମୋତେ ନେଇ ଗୋଟିଏ ମେସ୍‌ରେ ରଖିଦେଲେ । ଯେଉଁଦିନ ମୁଁ ପ୍ରଥମେ ସ୍କୁଲକୁ ଯାଏ ସେଦିନ ଲକ୍ଷ୍ୟ କରିଥିଲି ପିଲାମାନେ ହେଡ୍‌ମାଷ୍ଟର ଶ୍ରୀ ଗୋକୁଳାନନ୍ଦ ନାଏକଙ୍କୁ ରାସ୍ତାରେ ଯିବାର ଦେଖିଲେ ଭୟରେ ରାସ୍ତା ତଳକୁ ଖସିଯାଆନ୍ତି । ସେ ସମୟରେ ମୋ ମୁଣ୍ଡରେ ଗୋଛାଏ ବାଳ, ମୁଣ୍ଡରେ ସିନ୍ଦୁର କଲି । ଦିନେ ମୁଁ ରାସ୍ତାରେ ଚାଲିଥାଏ ପିଲାଙ୍କ ସହିତ, ପଛଆଡୁ ହେଡ୍‌ମାଷ୍ଟର ଆସୁଥିବାର ଦେଖି ପିଲାଏ ତଳକୁ ଖସିଗଲେ । ମୁଁ କିନ୍ତୁ ଯେପରି ଯାଉଥିଲି ଯାଉଥାଏ । ହେଡ୍‌ମାଷ୍ଟର ଆମକୁ ପାରିହୋଇ ଗଲାବେଳେ ଦୁଇ ତିନିଥର ମୋତେ ଚାହିଁ ଚାହିଁ ଚାଲିଗଲେ । ନାମ ଲେଖାହେଲା । ହେଡ୍‌ମାଷ୍ଟର ପଚାରିଲେ ମୁଣ୍ଡରେ ଏତେ ବାଳ କାହିଁକି ରଖିଛ ? ମୁଁ ଉତ୍ତର ଦେଇଥିଲି ମୋ ମୁଣ୍ଡ ଗରମ, ଏଣୁ ଗାଧୋଇ ମୁଣ୍ଡ ନ ପୋଛି ରଖିଦିଏ । ପାଣି ରହି ମୁଣ୍ଡ ଭଲଲାଗେ । ସେ କହିଲେ କିଛି ଥଣ୍ଡା ତେଲ ବ୍ୟବହାର କରୁ ନାହଁ । ମୁଁ କହିଥିଲି ପଇସା କାହିଁ ତେଲ କିଣିବାକୁ ? କେହି ଦେଲେ ଥଣ୍ଡା ତେଲ କିଣିବି । ଗୋଟାଏ ଗମ୍ଭୀର ହୁଁଟିଏ ମାରି ମୋତେ ଯିବାପାଇଁ କହିଥିଲେ । ସେହିଦିନୁ ମୁଁ ବୋଧହୁଏ ତାଙ୍କ ନଜରରେ ରହିଲି । ତାଙ୍କୁ



Digitized by srujanika@gmail.com

ପିଲାମାନେ ବାଘପରି ଭୟ କରୁଥିଲେ । ସେ ଭଲ ଶିକ୍ଷକ ଥାଆନ୍ତି । ସେ ଇଂରାଜୀ ଓ ଇତିହାସ ପଢ଼ାନ୍ତି । ଖୁବ୍ ଭଲ ଶିକ୍ଷକମାନେ ଥାଆନ୍ତି । ପଢ଼ାପଢ଼ି ଖୁବ୍ ଭଲ ।

ଶରତ ଭାଇ ସେଠାରେ କଚେରିରେ ଷ୍ଟାମ୍ପ ଭେଣ୍ଡର । ରୋଜଗାର ଭଲ । ତାଙ୍କୁ ପ୍ରାୟ ସମସ୍ତେ ଚିହ୍ନନ୍ତି । ଏଣେ ପୁଣି ଆମ ଗାଁ ସାହାପୁରର ମୁରବି । ହାତରେ ଦୁଇ ତିନି ଖଣ୍ଡ ଜମିଦାରୀ ପରିଚାଳନା, ମାନେ ଆମ ବାବାଙ୍କର ପାଞ୍ଚଭାଇଙ୍କର ଅର୍ଜିତ ସମସ୍ତ ସମ୍ପତ୍ତିର ପରିଚାଳକ । ହଁ ସେଦିନ ଖେଳଛୁଟିରେ 'ସ୍କୁଲ ହତାକୁ ଲାଗି କଚେରି ହତା ଓ ବଜାର' ଜଳଖିଆ ଖାଇବାପାଇଁ ଗଲି । ସେ ସମୟରେ ଜଗୁ ଗୁଡ଼ିଆର ଭାରି ନାମ ଡାକ । ଜଣକୁ ସାଥିରେ ନେଇ ଖାଇବାପାଇଁ ଗଲି । ଏକା ଏକା ଖାଇବାପାଇଁ ମୋତେ ଭଲ ଲାଗେ ନାହିଁ । କାହାରିକୁ ସାଙ୍ଗ ନ ପାଇଲେ ମୁଁ ଯାଏ ନାହିଁ । ସେ ସମୟରେ ଛେନାଗଜା ସେର ଛ/ଆଠଅଣା, ରସଗୋଲା ଛ/ଆଠଅଣା । ଏହିପରି ଅନ୍ୟାନ୍ୟ ଜିନିଷର ଦର, ଆଉ ବର୍ତ୍ତମାନ କିଲୋ । ସେଦିନ ଚାଲିଗଲା, ଆଉ ଆସିବନି । ହଁ ଖାଇବାପାଇଁ ଯାଇ ଦୁଇ ଜଣ ଅଧସେର ଛେନାଗଜା ଖାଇଲୁ । ଖାଇସାରି ହାତଧୋଇ ନୁଆଁଣିଆ ଚାଳପାଇଁ ଠିକ୍ ବାହାରକୁ ଆସି ରୁମାଲରେ ହାତ ପୋଛୁଛି ସେ ଜଗୁ ଗୁଡ଼ିଆ କହିଲା 'ବାବୁ ପଇସା', ହଠାତ୍ ରାଗିଗଲି । ଧାଇଁ ଯାଇ ଛେନାଗଜା ଥାଳିଟା ରାସ୍ତାରେ କଚାଡ଼ି ଦେଇ ନିର୍ବିକାର ଭାବେ କେହି କିଛି ନ ବୁଝୁଣୁ ପାନ ଦୋକାନୀଠୁ ପାନ ନେଇ ସ୍କୁଲକୁ ଚାଲିଗଲି । କିଛି ସମୟ ପରେ ଶରତ ଭାଇ ଯାଇ ମୋତେ ସ୍କୁଲରୁ ଡାକି ଆଣିଲେ ସେହି ଗୁଡ଼ିଆ ଦୋକାନକୁ । ଦେଖିଲୁ ଟିକିଏ ଉତ୍ତେଜନା ଲାଗିଥାଏ । ମୋତେ ଗଜାଥାଳି କାହିଁକି ଫୋପାଡ଼ି ଦେଲି ବୋଲି ପଚାରିଲେ । ମୁଁ କହିଲି ମୁଁ ହାତ ଧୋଇଛି କି ନାହିଁ ସେ କାହିଁକି ପଇସା ମାଗିଲା ? ମୁଁ କଣ ପଳାଇ ଯାଉଛି । ତା'ର କେତେ ନଷ୍ଟ ହେଲା ତାକୁ ଦେଇ ଦିଅନ୍ତୁ । ସେ ଦିନୁ କଥା ହେଲା, ''ମୋତେ କେହି ପଇସା ମାଗିବେ ନାହିଁ, ମୁଁ ଯେଉଁଠୁ ଯାହା ଖାଏ ବା ନିଏ । ସେ ଦୋକାନ ଭିତରୁ କେତେଜଣ କହି ଉଠିଲେ, ''କାହିଁକି ସିଏ କଅଣ କି ? ପଇସା ମାଗିଲେ କଅଣ ଫାଶୀ ହୋଇଯିବ ?'' ମୋର ଆଖି ଜଳି ଉଠିଲା, କହିଲି ''ପୁଣି ଥରେ ପାଟିରୁ କଥା ବାହାରିଲେ ପାଟିରୁ ଜିଭ ଓପାଡ଼ି ଦେବି ।''ମୋର ଏ ରୂପ ଦେଖି କାହିଁକି ଯେ ସମସ୍ତେ ଡରିଗଲେ, ମୁଁ କହି ପାରିବି ନାହିଁ । ଯେ ଯେଉଁଠି ଥିଲେ ଧୀରେ ଧୀରେ ପଳାଇଗଲେ । ମୁଁ ପୁଣି ସ୍କୁଲକୁ ଚାଲି ଆସିଲି ।

କଟକରୁ ଫେରିବା ସମୟରେ ମୁଁ ପ୍ରାୟ ଦିନକୁ ୨୫ଖଣ୍ଡ ପାନ ଖାଉଥିଲି । କିନ୍ତୁ ଭଦ୍ରଖରେ କାହିଁକି ପାନ କିଣି ଖାଇ ସୁଖ ପାଉ ନ ଥିଲି । ସବୁ ଦୋକାନରୁ ପାନ ଖାଇଛି, କିନ୍ତୁ ଭଲ ଲାଗେ ନାହିଁ । ଗୋଟିଏ ପାନ ଦୋକାନୀ ନାମ ଫକିରା । ସେ ଆମ ସହିତ ଫୁଟବଲ ମଧ୍ୟ ଖେଳେ । ସେ କହିଲା ମୁଁ ପାନ ଦେବି, ତୁମକୁ ଭଲ ଲାଗିବ । ସେ ପାନ ଦେଲା, ମୋତେ ମଧ୍ୟ ଭଲ ଲାଗିଲା ।



Digitized by srujanika@gmail.com

ମୋର ପାନ ଖିଆ କଥା ସମସ୍ତେ ଜାଣନ୍ତି । ଦିନେ ହଷ୍ଟେଲକୁ ନାରଣ ବାବୁ ଡାକ୍ତର ଆସିଥାନ୍ତି । ସେ ହଠାତ୍ ମୋତେ ଖଣ୍ଡେ ପାନ ମାଗିଲେ । ମୁଁ ବଟାରୁ ପାନ ଖଣ୍ଡେ ଦେଲି, ସେ ପାନଟି ପାଟିରେ ଦେଲା ପରେ ପରେ ତାହା କାଢ଼ି ପକାଇଲେ ଓ ଆଉ ଖଣ୍ଡିଏ ପାନ ମାଗିଲେ । ସେ ପାନ ଖଣ୍ଡିକ ନେଇ ତାହା ଖୋଲି ଖୁବ୍ ଭଲ ଭାବରେ ଦେଖି କାହା ଦୋକାନ ପାନ ବୋଲି ପଚାରିଲେ । ମୁଁ ଫକିରା ନାମ କହିଲି । ସେ ଦଶଟାବେଳେ ମୋତେ ପାନ ଦୋକାନକୁ ଯିବାକୁ କହିଲେ ଓ ସେ ନିଜେ ସେଠାରେ ଥିବେ ବୋଲି କହିଲେ । ମୁଁ କିଛି ବୁଝି ପାରୁ ନ ଥାଏ । ସ୍କୁଲ ଯିବାପୂର୍ବରୁ ମୁଁ ପାନ କିଣିବାକୁ ଗଲି । ନାରଣ ବାବୁ ପଛେ ପଛେ ଆସି ଟିକେ ଉହାଡ଼ରେ ଠିଆ ହେଲେ । ଫକିରା ପାନରେ ଚୂନ, ଗୁଆ, ଗୁଣ୍ଡି ଦେଇ ତା ସିଟ୍ ତଳୁ ଗୋଟିଏ ସାନ ଶିଶି ବାହାର କରି ଗୋଟିଏ କାଠିରେ ଟିକିଏ ଟିକିଏ ଧଳା ଗୁଣ୍ଡ ଦେବା ସମୟରେ ଡାକ୍ତର ବାବୁ ହଠାତ୍ ପଛରୁ ଆସିଲେ ଓ ଶିଶିଟି ଛଡ଼ାଇ ନେଲେ । ଫକିରା ଦେହ ସତେ ଯେମିତି ବରଡ଼ା ପତ୍ର ପରି ଥରୁଥାଏ । ଡାକ୍ତର ବାବୁ ତାକୁ ପୋଲିସରେ ଦେବାପାଇଁ ଧମକ ଦେଉଥାନ୍ତି । ସେ ଧଳା ଗୁଣ୍ଡ ତକ କିଛି ନିଶା । ଏଣୁ ଖଣ୍ଡିଏ ଖାଇବା ପରେ ବେଶ୍ ଆରମ ଲାଗେ । ଯାହାହେଉ ମୋର ଅନୁରୋଧରେ ତାକୁ ପୋଲିସ ପର୍ଯ୍ୟନ୍ତ ଯିବାକୁ ହୋଇ ନ ଥିଲା । ସେଦିନ ଡାକ୍ତର ନାରୟଣ ବାବୁଙ୍କପାଇଁ ବିଷାକ୍ତ ନିଶାରୁ ବଞ୍ଚିଯାଇଥିଲି । ପଢ଼ିବା ସମୟରେ ୨୫/୩୦ଟି ପାନ ଖାଉଥିଲି । ଆଜିକାଲି ପ୍ରାୟ ୫୦ଖଣ୍ଡ ପାନ ଖାଉଛି । କେତେ ଥର ପାନ ଛାଡ଼ିଛି, କିନ୍ତୁ ପାରିନି । କେବଳ ଏହି ନିଶାଟି ମୋତେ କରାୟତ୍ତ କରିଛି । ସ୍ତ୍ରୀଙ୍କ ଅନୁରୋଧ, ଅନୁଯୋଗ, ଧମକ କେହି ମୋତେ ସେଥିରୁ ନିବୃତ୍ତ କରି ପାରିନି ।

ହେଡ୍‌ମାଷ୍ଟରଙ୍କର ଶୁଭ ଦୃଷ୍ଟି ମୋ ଉପରେ ନ ଥିଲା । କିନ୍ତୁ ଦୁଇ ଜଣ ଶିକ୍ଷକଙ୍କ ବ୍ୟତୀତ ସମସ୍ତେ ମୋତେ ଭଲ ପାଉଥିଲେ । ଭଲ ପଢୁଥିଲି, ଭଲ ଖେଳୁଥିଲି । ସେବା ସଙ୍ଘ ଗୋଟାଏ ପ୍ରତିଷ୍ଠା କରି ରୋଗୀଙ୍କର ଶବଦାହ, ବନ୍ୟା ସମୟରେ ଓ ନିଆଁ ଲାଗିଲେ ସାହାଯ୍ୟ ଇତ୍ୟାଦି କାମ କରୁଥିଲି । ସ୍କୁଲର ସମସ୍ତ ଛାତ୍ରଙ୍କ ନେତା ହୋଇଉଠିଲି । ସ୍କୁଲର ଚାରୋଟି କ୍ଲାସରେ ଚାରୋଟି କ୍ୟାପଟେନ୍ । ସେ ସମୟରେ ସ୍କୁଲ ଛୁଟିର ଅଧଘଣ୍ଟା ପରେ ଗୋଟିଏ ବାଧତାମୂଳକ ଡ୍ରିଲ କ୍ଲାସ ହେଉଥିଲା । ମୁଁ ସେଥିରେ ମଧ କ୍ୟାପଟେନ୍ । ଏଣୁ ଶିକ୍ଷା ବ୍ୟତୀତ ଅନ୍ୟ ସମସ୍ତ ଅଧିକାର ମୋର ପିଲାଙ୍କ ଉପରେ ଥିଲା । ଏପରିକି ଦରକାର ପଡ଼ିଲେ ସେହି ବାଘ ହେଡ୍‌ମାଷ୍ଟରଙ୍କୁ ମଧ ଏଡ଼ି ଦେବାପାଇଁ ପିଲାଙ୍କର ସାହସ ହୋଇଥିଲା । ସେଥିପାଇଁ ହେଡ୍‌ମାଷ୍ଟର ଶଙ୍କିତ ଥିଲେ । ମଝିରେ ଥରେ ସେ ମୋତେ ଏତେ କ୍ଷମତା ନ ଦେବାପାଇଁ ପ୍ରସ୍ତାବ ଆଣିଥିଲେ । କିନ୍ତୁ ଅନ୍ୟ ଶିକ୍ଷକମାନେ ମୋତେ ସମର୍ଥନ କରିଥିଲେ ।

ଭଦ୍ରଖରେ ମୋର ସାଧନା ଭଲଭାବେ ଚାଲିଥାଏ । ଆଗରୁ କେହି କେମିତି ମୋର ସାଧନା ଜାଣିଥାନ୍ତି । ଏଣୁ ଧୀରେ ପ୍ରାୟ ସମସ୍ତେ ଜାଣି ଯାଇଥିଲେ । ମୋର ଚେହେରା, ମୋର ଦୈହିକ



Digitized by srujanika@gmail.com

ଶକ୍ତିକୁ ସେତେବେଳେ ସମସ୍ତେ ସଶଙ୍କ ଓ ସପ୍ରଶଂସ ଦୃଷ୍ଟିରେ ଦେଖୁଥାନ୍ତି । ଦୈହିକ ଶକ୍ତିକୁ ସେତେବେଳେ ପହେଲମାନଙ୍କ ବ୍ୟତୀତ କେହି ପାରୁ ନ ଥିଲେ । ମୋର ବୟସ ସେତେବେଳେ କେବଳ ୧୫ବର୍ଷ । ଓଜନ ଥିଲା ୧ ମହଣ/୫ସେର । ବର୍ଷ ଶେଷରେ ଯେଉଁ ସ୍ପୋର୍ଟ୍‌ସ ହୁଏ ସେଥିରେ ସବୁଥିରେ ପ୍ରାୟ ପ୍ରଥମ ବା ଦ୍ୱିତୀୟ ହେଉଥିଲି । ଫୁଟବଲ ରାଇଟ୍ ହାଫ୍‌ରେ ସେତେବେଳେ ମୁଁ ଖୁବ୍ ଭଲ ଖେଳୁଥିଲି । ଦରକାର ପଡ଼ିଲେ ଗୋଲ୍ କିପର୍ ମଧ ହୁଏ । ରାଇଟ୍ ବେକ୍ ମଧ ଖେଳେ । ସ୍କୁଲ ପଡ଼ିଆରେ ଟାଉନ୍‌ର ପିଲାମାନେ ମଧ ଆସି ଖେଳନ୍ତି । ତତ୍‌ସମୟରେ ଓଡ଼ିଶାର ପ୍ରସିଦ୍ଧ ଖେଳାଳିମାନଙ୍କ ମଧରୁ ବିଶିଷ୍ଟ ଖେଳାଳି ରସିଦ୍ ମିଆଁ ମଧ ଆମ ସାଥିରେ ଖେଳୁଥିଲେ । ତାଙ୍କ ଘର ଆମ ସ୍କୁଲକୁ ଲାଗିଥାଏ । ରଜାକ୍ ମିଆଁ ଜଣେ ପଶୁ ଡାକ୍ତର ଯାହାଙ୍କ ବୟସ ସେ ସମୟରେ ପ୍ରାୟ ୪୦/୪୫ବର୍ଷ ହେବ, ମୁଣ୍ଡ ବାଳ ପାଚି ଯାଇଥାଏ, ସେ ଲେଫ୍ଟ୍‌ଆଉଟ ଖେଳୁଥିଲେ । ସେ ବୟସରେ ତାଙ୍କୁ ଖେଳିବାର ଦେଖି ମୋର ମନରେ ଏହି ଆଶା ରହିଲା ଯେ ବୁଢ଼ା ହେବା ପର୍ଯ୍ୟନ୍ତ ଫୁଟବଲ ଖେଳିବି । ସେ ଦିନର ସେ ଆଶା ମୋର ପୂର୍ଣ୍ଣ ହୋଇଛି । ମୋର ୫୨ବର୍ଷ ପର୍ଯ୍ୟନ୍ତ ମୁଁ ଫୁଟବଲ ମ୍ୟାଚ୍ ଖେଳିଛି । ୫୫ବର୍ଷ ପର୍ଯ୍ୟନ୍ତ ପଡ଼ିଆରେ ପ୍ରାକ୍ଟିସ ଖେଳିଛି ।

ଭଦ୍ରଖ ମୋ ବାବାଙ୍କ ଜନ୍ମଭୂମି । ମୋର ଖେଳଭୂମି । ଆମ ସାଥିରେ ପର୍ଶୁରାମ ନାଏକ ବୋଲି ଗୋଟିଏ କଳାହୋଇ ରୋଗା ପିଲାଟିଏ ପଢୁଥିଲା । ପାଠରେ ସେ ଯେ କଅଣ ତାହା ବର୍ଣ୍ଣନା କରି ହେବ ନାହିଁ । ଏପରିକି ଶିକ୍ଷକମାନେ ତାକୁ ସମୀହ କରନ୍ତି । ସାଥିରେ ବସି ଗପ କରୁଥିବା ସମୟରେ ମଧ ସେ ଗୋଟାଏ ମୋଟା ଖାତା ଓ ପେନ୍‌ସିଲ ଧରି ଅଙ୍କ କଷୁଥିବ । ନଚେତ୍ ଜ୍ୟୋମେଟ୍ରି ପ୍ରୋବ୍ଲେମ କରୁଥିବ । ଖାତା ଓ ପେନ୍‌ସିଲ ତା'ର ଗୋଟିଏ ଅଙ୍ଗ । ଅଙ୍କ ଓ ସଂସ୍କୃତ ଉଭୟରେ ସେ ପାରଙ୍ଗମ । ଏଣୁ ତାର ଏଡିସନାଲ ବିଷୟପାଇଁ ଅଙ୍କ ଓ ସଂସ୍କୃତ ଶିକ୍ଷକଙ୍କ ମଧରେ ଟଣାଟଣି । ସରସ୍ୱତୀଙ୍କର ସେ ବରପୁତ୍ର । ଦଶମଶ୍ରେଣୀରେ ପଢୁଥିବା ସମୟରେ ମେଟ୍ରିକର ସମସ୍ତ ପାଠ ପଢ଼ି ସାରିଥାଏ । କେବଳ ଥରେ ପଢ଼ିଲେ ତାର ମନେ ରହିଯାଏ । ସମସ୍ତଙ୍କର ବିଶ୍ୱାସ ଯେ  ସେ ଫାଇନାଲ ପରୀକ୍ଷାରେ ସେଣ୍ଟରରେ ପ୍ରଥମ ତ ହେବ ନିଶ୍ଚୟ ତା'ପରେ ସ୍ୱତନ୍ତ୍ର କିଛି ପାଇବ । ଆମ ଚିନ୍ତାପରି କିନ୍ତୁ ହୋଇ ନ ଥାଏ ବିଧିଲିପି । ଶେଷରେ ସେ ତୃତୀୟ ଶ୍ରେଣୀରେ ପାଶ୍ କଲା । ଆଉ ମନମୋହନ ବୋଲି ଗୋଟିଏ ଛୋଟ ପିଲା ଯେ କି ହେଡ୍‌ମାଷ୍ଟରଙ୍କ ଦୟାରେ ସେଣ୍ଟଅପ୍ ହୋଇଥିଲା ସେ ଦ୍ୱିତୀୟ ଶ୍ରେଣୀରେ ପାଶ୍ କଲା । ଏହା ହିଁ 'ବିଧିଲିପି ।' ଯେ ଯେତେ ଯାହା କରୁ ବିଧିଲିପି ଯାହାଥିବ ତାହା ହିଁ ହେବ । ଏଣୁ ଏତେ ଆଶା କରିବା ପ୍ରୟୋଜନ ନାହିଁ । କେବଳ ନିଜର କର୍ତ୍ତବ୍ୟ କରିବା ହିଁ ଧର୍ମ । ନିଜର ଆତ୍ମାକୁ ସନ୍ତୁଷ୍ଟ କରିବା ହିଁ କର୍ତ୍ତବ୍ୟ । ନିଜର ଜୀବନକୁ ଉପଭୋଗ କରିବା ହିଁ ସୁଖ । ଅବଶ୍ୟ ନିଜକୁ ସୁଖ ଦେବାପାଇଁ ଅନ୍ୟର ସୁଖରେ ହସ୍ତକ୍ଷେପ ବା ଅନ୍ୟର ସୁଖ ଅପହରଣ କରିବା ଉଚିତ ନୁହେଁ ।



Digitized by srujanika@gmail.com

ନିଦ ହଠାତ୍ ଭାଙ୍ଗିଗଲା ପରି ମୋର ହଠାତ୍ ପୁରୁଣାଦିନର କଥାରୁ ବର୍ତ୍ତମାନ ଚାଲି ଆସିଲି । ଆଗରେ ଖୋର୍ଦ୍ଧାରୋଡ୍ ଷ୍ଟେସନ । ଇତିମଧ୍ୟରେ ମୋ ଆଗ ସିଟ୍ ଭଦ୍ରଲୋକ ବିଛଣା ପତ୍ର ବାନ୍ଧି ପ୍ରସ୍ତୁତ ହୋଇଗଲେଣି । ମୁଁ ମଧ୍ୟ ବାଥ୍‌ରୁମ୍ କୁ ଯାଇ ମୁହଁ ହାତ ଧୋଇ ନିତ୍ୟକର୍ମ ଶେଷ କରି ଆସିଲି । ଗାଡ଼ି ଧୀରେ ଧୀରେ ଷ୍ଟେସନ ଭିତରକୁ ଆସିଲା । ଭଦ୍ରଲୋକ ସେଠାରେ ନମସ୍କାରଟିଏ ପକାଇ ଓହ୍ଲାଇ ଗଲେ । ମୁଁ ତଳକୁ ଯାଇ ଚା' ଜଳଖିଆ ଖାଇ ଭିତରକୁ ଆସି ପାନ ବାକ୍ସ ବାହାର କରି କିଛି ପାନ ଭାଙ୍ଗିଲି । ଇତ୍ୟବସରରେ ଜଣେ ତେଲେଙ୍ଗା ଭଦ୍ରଲୋକ ତାଙ୍କ ପରିବାର ସହ ଆସି ମୋ ଆଗ ସିଟ୍‌ରେ ବସିଗଲେଣି । ପ୍ଲାଟଫର୍ମରେ ଦେଖିଲି ଛଅଟି ପିଲା ସାଥିହୋଇ ଘୂରି ବୁଲୁଛନ୍ତି । ସେମାନଙ୍କର ଢଙ୍ଗରଙ୍ଗ ଦେଖି ମନେ ହେଲା ଛଅଟି ଯାକ ଏକ ସୂତ୍ରରେ ବନ୍ଧା । ମୋର ମନେ ପଡ଼ିଗଲା ଆମର ନବରତ୍ନ କଥା । ଭଦ୍ରଖ ହଷ୍ଟେଲରେ ଥିବା ସମୟରେ ଆମ ରୁମ୍‌ରେ ଆମେ ନଅଜଣ ଥାଉଁ । ଆମ ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟ ଆମକୁ ନବରତ୍ନ ବୋଲି ନାମ ଦେଇଥାଆନ୍ତି । ଆମେ ଥିଲୁ ଏକକୁ ଆରେକ ବଳିଆର । ଆମ ସହ ରାମ ବୋଲି ଗୋଟିଏ ପିଲା ଥାଏ । ବଡ଼ ଘରର ପିଲା । ସୁନ୍ଦର ସ୍ୱାସ୍ଥ୍ୟ । ମୋର ସେ ଏତେ ଭକ୍ତ ଯେ ମାର ବୋଲି କହିବା ମାତ୍ରେ ସେ ମାରିଦେବ । ମୁଁ ଯାହା କହିବି ସେ କିଛି ନ ଭାବି କରିଦେବ । ନବରତ୍ନଙ୍କର ଆଜି ସମସ୍ତଙ୍କର ନାମ ମନେ ନାହିଁ । କିନ୍ତୁ ସମସ୍ତଙ୍କୁ ମନେ ଅଛି । ମୋର ପିଉସା ଶ୍ରୀ ଛକଡ଼ି ମହାନ୍ତିଙ୍କର (ବର୍ତ୍ତମାନ ସେ ନାହାନ୍ତି, ତାଙ୍କର ଏକମାତ୍ର ପୁତ୍ର ମଧ୍ୟ । ତାଙ୍କର ସମସ୍ତ ସମ୍ପତ୍ତି ସେ ଭଦ୍ରଖ କଲେଜକୁ ଦାନ କରିଛନ୍ତି । ସେ ମଧ୍ୟ ବାରିପଦାରେ P. W. D. S. D. O. ଥିଲେ ।) ଗୋଟାଏ ଖୁବ୍ ବଡ଼ ଆମ୍ବତୋଟା ଥାଏ, ଖୁବ୍ ଭଲ ଆମ୍ବ ମଧ୍ୟ ଫଳେ । ଖରାଦିନେ, ଆମ୍ବ ପାଚିବା ସମୟ । ଆମର ଇଚ୍ଛା ହେଲା ସେଠାରୁ ଆମ୍ବ ଆଣିବା । ଦୁଇଟି ବଡ଼ ବସ୍ତା ନେଇ ବାହାରିଲୁ । ଯେଉଁ ଗଛଟି ଖୁବ୍ ବଡ଼ ଓ ଭଲ ଆମ୍ବ, ସେହି ଗଛରେ ଆମେ ଚାରିଜଣ ଉଠିଲୁ । ଆଉ ମାନେ ଅନ୍ୟ ଗଛତଳେ ଥାଆନ୍ତି । କିଛି ଆମ୍ବ ତୋଳି ତଳେ ପକାଇ ଥାଉ । ଦେଖିଲୁ ଯେ ସେ ତୋଟା ଭିତରେ ଥିବା ପିଉସାଙ୍କର ଜଣେ ପ୍ରଜା, ସେହି ଗଛମୂଳକୁ ଆସି କିଏରେ ଆମ୍ବ ତୋଳୁଛି ପଚାରିଦେଲା । ସଙ୍ଗେ ସଙ୍ଗେ ମୁଁ ଓ ମୋ ପାଖରେ ଥିବା ଅନ୍ୟ ଜଣକ ତାହାରି ଉପରକୁ କୁଦି ପଡ଼ି ତାକୁ ମାଡ଼ିବସି ତାହାରି ଲୁଗାରେ ତା'ମୁହଁ ଓ ହାତ ବାନ୍ଧି ପକାଇଲୁ । ସମସ୍ତେ ମିଶି ତା'କୁ ସାଳନ୍ଦୀ ନଦୀ ବାଲିକୁ ବୋହି ନେଲୁ । ସେଠାରେ ଗୋଟାଏ ବଡ଼ ଗାତ ଖୋଳି ତା ଅଣ୍ଟା ପର୍ଯ୍ୟନ୍ତ ବାଲିରେ ପୋତିଦେଲୁ । ଅଣ୍ଟାଠାରୁ ଉପରକୁ ବାହାରେ ଥାଏ । ହାତ ବନ୍ଧା ହୋଇଥାଏ । ମୁହଁ ଓ ଆଖି ବନ୍ଦ ଥାଏ । ତା'ପରେ ଆମ୍ବ ତକ ଗୋଟାଇ ଫେରିଲୁ । ଡର ଧରା ପଡ଼ିବା । ଗୋଟେ ବୁଦ୍ଧି ବାହାର କଲି । ଆମ୍ବ ସବୁ ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟଙ୍କ ଖଟତଳେ ନେଇ ଢାଳି ଦେଲୁ । ତହିଁ ପରଦିନ ପ୍ରାୟ ୮ଟା ବେଳେ ଆମ୍ବ ଚୋରୀ ଓ ଲୋକ ବାଲିରେ ପୋତାଥିବା କଥା ଶୁଣି ସୁପରିଣ୍ଟେଣ୍ଡେଣ୍ଟଙ୍କର



Digitized by srujanika@gmail.com

କି ବ୍ୟସ୍ତତା, ତା ସାଙ୍ଗକୁ ନେହୁରା, ଏ ଆମ୍ବତକ ଏଠାରୁ ନେଇ ସେ ପୋଖରୀରେ ଢାଳିଦିଅ। ଆମେ ଆମ୍ବତକ ନେଇ ଗୋଟାଏ ବଡ଼ ବୁଦା ଭିତରେ ରଖିଦେଲୁ ଓ ପରେ ସବୁ ଖାଇଲୁ।

ଆଉ ଥରେ ଖରାଦିନେ ରାତିରେ ହଷ୍ଟେଲ ବାହାରେ ପଡ଼ିଆରେ ବସି ଆମେ ପାଠ ପଢୁଥାଉ, ପାଖରେ ରାମ ମଧ୍ୟ ପଢୁଥାଏ। ହଠାତ୍ ଗୋଟାଏ କାର୍ ଆସି ପଡ଼ିଆରେ ପଶି ଏପଟ ସେପଟ ହେଲା। ମୁଁ ରାମକୁ କହିଲି "ମାର ତ ଗୋଟାଏ ଟେକା;" କହୁ କହୁ ରାମ ପାଖରୁ ଖଣ୍ଡିଆ ଇଟା ଉଠାଇ ମାରି ଦେଲା ଯେ ପଛ କାଚରେ ବାଜି କାଚ ଚୂନା ହୋଇଗଲା। ମଟରଟା ପଳାଇଲା। ତା'ପରଦିନ ଶୁଣିଲି ତାହା S. D. O. ଦିଲାବର ଅଲ୍ଲିଙ୍କର। ଆମ ହେଡ୍‌ମାଷ୍ଟରଙ୍କୁ ଦେଖେ କିଏ ? ରାଗ ତମତମ ହୋଇ ଆମ ହଷ୍ଟେଲ ପିଲାଙ୍କୁ ଡାକି ପଚାରୁଥାଆନ୍ତି। କିନ୍ତୁ କେହି କିଛି କହନ୍ତି ନାହିଁ କେବଳ କହନ୍ତି "ହଁ ଗୋଟାଏ ଗାଡ଼ି ଆସି, ଚାରି/ ପାଞ୍ଚ ଥର ପଡ଼ିଆରେ ଘୂରିଛି।" ଆଉ କିଛି ଜାଣନ୍ତି ନାହିଁ। କେହି ତ କହିଲେ "ହଁ ଟେକାମାଡ଼ ହୋଇଛି, କିନ୍ତୁ କିଏ ମାରିଛି ଜାଣୁନା।" ଶେଷରେ ଅନିଚ୍ଛା ସତ୍ୱେ ମୋତେ ଡାକି ପଚାରିଲେ। ମୁଁ ସବୁ ଘଟଣା କହିଗଲି। କେବଳ ରାମ ନାମଟି କହି ନାହିଁ। ଏତେ ଦିନେ ଗୋଟାଏ ବାଗ ପାଇଲେ ହେଡ୍‌ମାଷ୍ଟର, "ମୋତେ ରଷ୍ଟିକେଟ୍ କରିବେ।" ଶିକ୍ଷକଙ୍କ ସଭା ବସିଲା, ଦି'ଜଣ ହେଡ୍‌ମାଷ୍ଟରଙ୍କୁ ସର୍ପୋଟ କଲେ। ଆଉ କେତେକ, ବିଶେଷ କରି ଉପେନ୍ଦ୍ର ବାବୁ Asst-Headmaster ଭୀଷଣ ବାଧା ଦେଲେ। ସେ କହିଲେ ଆପଣଙ୍କଠାରେ କେହି ତ ଆପତ୍ତି କରି ନାହାନ୍ତି। ଏଣୁ ବିଚାର ହେବ କେମିତ ? ଏଇଥିରେ ହେଡ୍‌ମାଷ୍ଟର ସେଦିନ କିଛି ନ କହି ଏସ.ଡି.ଓ. ଙ୍କ ଡ୍ରାଇଭରକୁ ଡକାଇ ତାଠାରୁ ଗୋଟାଏ ଦରଖାସ୍ତ ଲେଖାଇ ନେଲେ ଓ ସେହି ଦରଖାସ୍ତ ବଳରେ ମେନେଜିଙ୍ଗ କମିଟି ମିଟିଙ୍ଗ ଡାକିଲେ। ସେ କମିଟିରେ ଏସ.ଡି.ଓ.ସଭାପତି। ଧାର୍ଯ୍ୟ ଦିନ ସମସ୍ତେ ଆସି ସଭାପତି ଆସିବା ପୂର୍ବରୁ ମୋତେ ରଷ୍ଟିକେଟ୍ କରିବା ସ୍ଥିର କଲେ। ଯଦିଓ କିଛି ଶିକ୍ଷକ ଆପତ୍ତି କରିଥିଲେ। ଖୋସାମୁଦିଆ ଯୁଗ। ଏସ.ଡି.ଓ.ଙ୍କ ଗାଡ଼ି। ଯାହାହେଉ ଏସ.ଡି.ଓ.ଆସିଲେ ସମସ୍ତ ଘଟଣା ଶୁଣିଲେ। ସେ ମୋତେ ଡକାଇ ପଠାଇଲେ। ମୋତେ ପଚାରିବାରୁ ମୁଁ କହିଲି ଆମେ ସମସ୍ତେ ପଢୁଥିଲୁ। କିଏ ଜଣେ ଗାଡ଼ିଟିଏ ଧରି ଚାରି/ପାଞ୍ଚଥର ପଡ଼ିଆରେ ଘୂରିବାରୁ "କିଏ ଆମ ପଡ଼ିଆରେ ଆସି ବୁଲୁଛି ମାର ବୋଲି କହିଲି।" ମୋ କଥା ଶୁଣି କେହି ଟେକାଟାଏ ପକାଇଛି। କାଚ ଭାଙ୍ଗିଛି କି ନା ଜାଣେ ନାହିଁ। ମୋ ଠାରୁ ସମସ୍ତ ଶୁଣିଲେ ଓ ହେଡ୍‌ମାଷ୍ଟରଙ୍କଠାରୁ ମୋ ବିରୁଦ୍ଧରେ ବକ୍ତୃତା ଶୁଣିଲେ। ତା'ପରେ କହିଲେ, ଦେଖନ୍ତୁ ଗାଡ଼ି ମୋର, ମୁଁ କୌଣସି ଅଭିଯୋଗ କରୁ ନାହିଁ, ତା'ପରେ ସ୍କୁଲ ପଡ଼ିଆରେ ଗାଡ଼ି ଆଣି ବୁଲାଇବାର ଅଧିକାର କାହାର ନାହିଁ। ଏଣୁ ଦଣ୍ଡର କାରଣ କିଛି ନାହିଁ। ଏମିତି ଛାତିଥିବା ଅଫିସରପାଇଁ ବଞ୍ଚିଗଲି। ବର୍ତ୍ତମାନ ଏପରି ହୃଦୟର ଅଫିସର ବିରଳ।



Digitized by srujanika@gmail.com

କରଞ୍ଜିଆରେ ମୋ ବାବା ଇହଧାମ ଛାଡ଼ି ଚାଲିଯିବାର ଖବର ଭଦ୍ରଖରେ ପାଇଲି । ମୋର ବଡ଼ବାପା ଡାକ୍ତର ଦାଶରଥି ପ୍ରସାଦଙ୍କ ସହ କରଞ୍ଜିଆ ଆସିଲି । ଠିକ୍ ପରୀକ୍ଷା ସରିଥାଏ । ଭଦ୍ରଖ ଆମ ମୂଳ । ବାବା ଓ ତାଙ୍କ ଚାରି ଭାଇ ଏଇଠି ଜନ୍ମ, ଏଇଠି ମଣିଷ । ମୋ ବାବା କରଞ୍ଜିଆ ଯାଇଥିଲେ ଓକିଲାତି କରିବାକୁ । ମହା ସମାରୋହରେ ବାବାଙ୍କ ଦଶାହ କାର୍ଯ୍ୟ ହେଲା । ତତ୍‌ସମୟରେ ପାଞ୍ଚପିଢ଼ ସବ୍‌ଡିଭିଜନର ସବୁଠାରୁ ମାନ୍ୟଗଣ୍ୟ ବ୍ୟକ୍ତିଥିଲେ ସେ । ଏଣୁ ବହୁ ଲୋକଙ୍କର ସମାଗମ । ସ୍ଥାନୀୟ ଏସ.ଡି.ଓ. ଓ ଶ୍ରୀ ବୃନ୍ଦାବନ ପଣ୍ଡା ଆସି ସମସ୍ତ ଦଶାହ କାର୍ଯ୍ୟ ବୁଝାସୁଝା କରିଥିଲେ ଓ ମୋର ବଡ଼ଭାଇଙ୍କୁ ସାନ୍ତ୍ୱନା ଦେଇ କହୁଥିଲେ ''ତମର ଚିନ୍ତା କରିବାର କିଛି ନାହିଁ, ମୁଁ ଅଛି ।'' ଭାଇ ସେତେବେଳେ କଲିକତାରେ ବଙ୍ଗବାସୀ କଲେଜର ଛାତ୍ର । ସେଟା ତାଙ୍କର ବି.ଏ. ଫାଇନାଲ୍ ବର୍ଷ । ସେ ବର୍ଷ ଜୁନ ମାସରେ ବାବା ଭଦ୍ରଖରେ ବଡ଼ଭାଇଙ୍କର ଓ ସାନ ଭଉଣୀର ବିବାହ କାର୍ଯ୍ୟ ଶେଷ କରି ମୋର ମାଆଙ୍କୁ ନେଇ ଚାରିଧାମ ଶେଷଥରପାଇଁ ପୁରୀ ଜଗନ୍ନାଥ ଦର୍ଶନକୁ ଯାଇଥିଲେ । ସେଠାରୁ ଫେରି ପୁଅ ବୋହୂ ଓ ସାନଝିଅକୁ ନେଇ କରଞ୍ଜିଆ ଆସିଲେ । ତା'ର ତିନିଦିନ ପରେ ସେ ଚାଲିଗଲେ । ମୋର ଜୀବନର ଭୋଗ ଅଧ୍ୟାୟ ସେହିଦିନଠାରୁ ଶେଷ ହେଲା । ଦଶାହ କାର୍ଯ୍ୟ ଶେଷ ହେବାପରେ ଦିନେ ମୁଁ ମୋର ମନ୍ତ୍ର ସାଧନାକୁ ଯାଇଥିବାର ସମସ୍ତେ ଜାଣିଲେ । ସମସ୍ତଙ୍କର ଧାରଣା ମୁଁ କାଳିସାଧନା କରୁଛି । ଏଣୁ ସେଥିରୁ ମୋତେ ନିବର୍ତ୍ତାଇବାପାଇଁ ମାଆ ମୋତେ ସେ ସାଧନା ନ କରିବାପାଇଁ କହିଲେ । ମୁଁ କାଳୀ ସାଧନା କରୁ ନାହିଁ । ମନ୍ତ୍ର ସାଧନା କରୁଛି ବୋଲି ଯେତେ କହିଲି ସେ ମାନିଲା ନାହିଁ । ମୋତେ ଘରେ ବାନ୍ଧି ରଖିଲା । ତା'ର ପାଦ ଛୁଇଁ ନିୟମ କରିବାପାଇଁ ରାଣ ପକାଇଲା । ମୁଁ ସେ ସମୟରେ ତା'ର ବୈଧବ୍ୟ ବେଶ ଦେଖି ଦୃଢ଼ ହୋଇ ପାରିଲି ନାହିଁ । ଏତେ ଦିନର ସାଧନା ଭଙ୍ଗ ହେଲା । ଆଉ କେବଳ ମାସେ ପରେ ସାଧନା ପୂର୍ଣ୍ଣ ହୋଇଥାଆନ୍ତା, କିନ୍ତୁ ବିଧିଲିପି ଅଲଘନୀୟ ।

ଭଦ୍ରକ ଫେରିଲି । ମୋର ମନରେ ଆନନ୍ଦ ନ ଥାଏ । ସାଧନା ଭଙ୍ଗ ହେବାରୁ ମୋର ମାନସିକ ଭାରସାମ୍ୟ ରହିଲାନି । ଗୁରୁ କହିଥିଲେ ଯେ ସାଧନା ଅଧାରୁ ବନ୍ଦ କରିବ ନାହିଁ । ମାଆଙ୍କର ମନ୍ତ୍ରସାଧନା ଅସଂପୂର୍ଣ୍ଣ ହେଲେ ପରିଣତି କଣ ଯେ ହେବ କହିହେବନି । ମୁଁ କିନ୍ତୁ ଜନ୍ମଦାତ୍ରୀ ମାଆର ଇଚ୍ଛା ଓ ଖୁସିପାଇଁ ମାଆ କାଳୀଙ୍କର ସାଧନା ଭଙ୍ଗ କରିଥିଲି । ତା' ଫଳରେ କିଛି ଦିନ ଅସାଧାରଣ ମାନସିକ ସ୍ଥିତିରେ ରହିବାକୁ ପଡ଼ିଥିଲା । ମଝିରେ ମଝିରେ ମୁଁ ଅନ୍ୟ ଏକ ଜଗତକୁ ଚାଲିଯାଉଥିଲି, ସେଇ ସମୟରେ ମୋ ଭିତରେ ଏକ ଅଦମ୍ୟ ଶକ୍ତି ଜାଗ୍ରତ ହେଉଥିଲା । ସେଇ ସମୟରେ ମୁଁ କାହାରିକୁ ଭୟ କରୁ ନ ଥିଲି । ମୋ ଭିତରେ ମାଆଙ୍କର ଶକ୍ତି ବୋଧହୁଏ ମୋତେ ଉଗ୍ର କରିଦେଉଥିଲା । ମୋର ଏପରି ଅବସ୍ଥାର ସୁଯୋଗ ନେଇ ହେଡ୍‌ମାଷ୍ଟର ମୋର ମୁଣ୍ଡ ଖରାପ ହୋଇଛି ବୋଲି ପ୍ରମାଣ କରାଇବାକୁ ଚେଷ୍ଟାକଲେ, ହେଲେ ମେନେଜିଂ କମିଟିରେ



Digitized by srujanika@gmail.com

ଏସ.ଡି.ଓ.ବିରକ୍ତ ହୋଇ ହେଡ୍‌ମାଷ୍ଟରଙ୍କୁ କହିଲେ-''ପିଲାର ଏପରି ଅବସ୍ଥାପାଇଁ ଡାକ୍ତରୀ ଚିକିତ୍ସା କରାଇବା ବା ତାଙ୍କ ମୁରବିଙ୍କୁ ଡକାଇ କିଛି ବନ୍ଦୋବସ୍ତ କରିବା ପରିବର୍ତ୍ତେ, ତା ବିରୁଦ୍ଧରେ ଯେପରି କାର୍ଯ୍ୟ କରୁଛନ୍ତି ତଦ୍ୱାରା ପିଲାର ଅଧିକ କ୍ଷତି ହେବ ଏବଂ ସେପରି ଅବସ୍ଥାପାଇଁ ଆପଣ ହିଁ ଦାୟୀ ହେବେ।'' ଯାହାହେଉ ଭାଇ ଆସି ମୋତେ ନେଇଗଲେ।

ସ୍କୁଲରେ ହେଡ୍‌ମାଷ୍ଟରଙ୍କ ଅତ୍ୟାଚାର ତଥାପି ଲାଗି ରହିଲା। ମୋର ଏପରି ଅବସ୍ଥାର ସୁଯୋଗ ନେଇ ମୋତେ ପାଗଳ ବୋଲି ପ୍ରମାଣ କରିବାକୁ ତାଙ୍କ ଚେଷ୍ଟା ଚାଲିଲା। ଦିନେ ଏପରି ବ୍ୟବହାର ମୋତେ ଅସହ୍ୟ ହେଲା। ସେ ଯାହା ତାହା ଗାଳି କରି ମେନେଜିଙ୍ଗ କମିଟିକୁ ଆଉ ଥରେ ପରଦିନ ବସିବାପାଇଁ ଡକାଇବାର ବ୍ୟବସ୍ଥା କରି ସନ୍ଧ୍ୟାରେ ଘରକୁ ଗଲେ। ସେଦିନ ହେଡ୍‌ମାଷ୍ଟରଙ୍କ ବ୍ୟବହାରରେ ଏତେ ଉତ୍ତେଜିତ ହୋଇପଡ଼ିଲି, ତାଙ୍କୁ ତାଙ୍କ ଘରେ ମାରିଦେବାପାଇଁ ବାହାରି ପଡ଼ିଲି। ଏଇ ଅବସ୍ଥାରେ ରାସ୍ତାରେ ପଡ଼ି ମୂର୍ଚ୍ଛା ହୋଇଗଲି। ମୋତେ ପିଲାମାନେ ସ୍କୁଲ ବାରନ୍ଦାକୁ ବୋହି ଆଣି ଶୁଆଇଦେଲେ। ଆମ ସ୍କୁଲ ନିକଟରେ ଡାକବଙ୍ଗଳା। ସେଦିନ ସେଠାରେ ଜଣେ ଅଫିସର କ୍ୟାମ୍ପ କରୁଥାଆନ୍ତି। ସେ ହୋମିଓ ଔଷଧର ବ୍ୟବହାର ଜାଣିଥିଲେ। ସେ ଗଣ୍ଡଗୋଳ ଶୁଣି ଆସି ମୋତେ ଔଷଧ ଆଦି ଦେଇ ଶୁଆଇ ମୋ ପାଖରେ ବସିଥାଆନ୍ତି। ଏହି ସମୟରେ ଗୋକୁଳି ବାବୁ ,ତାଙ୍କ ସହିତ  କେତେକ ଶିକ୍ଷକ ଓ ଆଉ କେତେଜଣଙ୍କ ସହ ଆସି କାହିଁ ସୁଧୀର ତା'କୁ ଆଜି ଦେଖିନେବ ବୋଲି ପାଟି କରି କରି ପହଞ୍ଚିଗଲେ। ସେ ଭଦ୍ରଲୋକ ଗୋକୁଳି ବାବୁଙ୍କୁ ମନା କରିବା ସତ୍ତ୍ୱେ ସେ ପାଟିକରିବାକୁ ଲାଗିଲେ। ସେ ପାଟିରେ ହଠାତ୍ ମୁଁ ଉଠି ପଡ଼ି ଜଣକ ହାତରୁ ଠେଙ୍ଗା ଧରି ଛିଡ଼ା ହୋଇଗଲି। ଗୋକୁଳି ବାବୁଙ୍କ ସାଙ୍ଗରେ ପ୍ରାୟ ଦୁଇ/ତିନିଶହ ହେବ ଲୋକ। ଗୋକୁଳି ବାବୁ ପାଟି କରୁଥାଆନ୍ତି ''ଧର ତାକୁ ଧର, ବାନ୍ଧି ପକାଅ।'' ମୁଁ କେବଳ କହିଥିଲି ''ଦେଖି କାହାର ସାଧ ଅଛି ମୋ ଆଡ଼କୁ ଆଗେଇ ଆସ।'' ମୋର ସେ ଭୀଷଣ ରୂପ ଦେଖି କେହି ଆଗକୁ ଆସିବା ଦୂରେ ଥାଉ ପଛକୁ ପଛେଇ ପଛେଇ ଗଲେ। ହେଡ୍‌ମାଷ୍ଟର ସ୍କୁଲ ପିଅନମାନଙ୍କୁ ଆଣିଥାଆନ୍ତି। ଆମ ସ୍କୁଲର ଗୋଟେ ପଠାଣ ପିଅନ ଆଗେଇ ଆସିଲା, ମୁଁ ତା'ର ଜଙ୍ଘ ସନ୍ଧିକୁ ଏପରି ଗୋଟାଏ କିକ୍ ମାରିଲି ଯେ ସେ ତଳେ ପଡ଼ି ''ତୋବା, ମରଗୟା, ଆଲ୍ଲା ମରଗୟା'' କହି ଗଡ଼ି ଗଡ଼ି ପଳାଇଲା। ତା'ପରେ ମୁଁ ବାଡ଼ିଧରି ଆଗେଇବାକୁ ବସିବା ମାତ୍ରେ ଯିଏ ଯୁଆଡ଼େ ଧାଇଁ ପଳାଇଲେ। ସେ ଅଫିସର ମହୋଦୟ ମୋତେ ଧରି ନେଇ ପୁଣି ଔଷଧ ଦେଇ ଶୁଆଇ ରଖିଲେ।

ମୋର ପିଉସା ଶ୍ରୀ ଛକଡ଼ି ମହାନ୍ତି। ସେ ମଧ ମେନେଜିଙ୍ଗ କମିଟିର ସଦସ୍ୟ। ସେ ମୋତେ ତାଙ୍କ ଘରକୁ ନେଇଗଲେ ଓ ଗୋଟାଏ ଖୁବ୍ ବଡ଼ ହଲରେ ମୋତେ ନଜରବନ୍ଦି କରି ରଖିବାର ଦୁଇଦିନ ପରେ, ମୋ ବଡ଼ଭାଇ ଯାଇ ଭଦ୍ରଖରୁ ମୋତେ ନେଇ ଆସିଲେ ଓ



Digitized by srujanika@gmail.com

ବେତନଟିରେ ଶ୍ରୀ ଦୁର୍ଗାଚରଣ ମହାନ୍ତି, ରେଞ୍ଜର ଯେକି ଆମର ବଡ଼ଭାଇପରି ଥିଲେ, ତାଙ୍କରି ଠାରେ ଛାଡ଼ି ଦେଇ ଗଲେ। ଯେଉଁଦିନ ସେ ମୋତେ ଛାଡ଼ିଦେଇ ଗଲେ ସେଦିନ ରାତିରେ ମୁଁ ଶୋଇଲି, ତା'ପରଦିନ ପ୍ରାୟ ୯ଟାବେଳେ ଦୁର୍ଗାଭାଇ ମୋତେ ଜୋର୍‌କରି ଉଠାଇ ଦେବାରୁ ମୁଁ ନିତ୍ୟକର୍ମ ସାରି ଟିକିଏ ଜଳଖିଆ ଖାଇ ପୁଣି ଶୋଇଲି। ଦିନରେ ଖାଇବାପାଇଁ ଉଠାଇବାକୁ ଚେଷ୍ଟା କରିଛନ୍ତି, କିନ୍ତୁ ମୁଁ କୁଆଡ଼େ ଉଠିନି। ସନ୍ଧ୍ୟା ଗଲା, ରାତି ହେଲା ତେବେ ବି ଉଠି ନାହିଁ। ଏଣୁ ଦୁର୍ଗାଭାଇ ବ୍ୟସ୍ତ ହୋଇ ବାରିପଦାକୁ ଲୋକ ପଠାଇ ଡାକ୍ତରଙ୍କୁ ତହିଁ ପର ଦିନ ସକାଳୁ ଅଣାଇ ମୋତେ ଦେଖାଇଥିଲେ। ଡାକ୍ତର ମୋର ଅସୁସ୍ଥତାର ଲକ୍ଷଣ କିଛି ନ ପାଇ ମୋତେ ଶୋଇବାକୁ ଦେଲେ। ଗୋଟାଏ କିଛି ଇଞ୍ଜେକସନ୍ ଦେଇଥିଲେ। ସେ ଦିନ ମୁଁ ରାତି ଶୋଇବାପରେ ତହିଁ ପରଦିନ ସକାଳ ୬ଟାରେ ମୋର ନିଦ ଭାଙ୍ଗିଲା। ମୁଁ ସାଧାରଣଭାବେ ନିତ୍ୟକର୍ମ କଲି ଓ ମୋର ପୂର୍ବ କଥା କିଛି ସ୍ମରଣ ରହିଲାନି। ଯେପରି ଗୋଟାଏ ପରଦା ମୋ ପଛଆଡ଼େ ପଡ଼ିଗଲା ଓ ମସ୍ତିଷ୍କର ବିକୃତି ମଧ ରହିଲାନି। ଏହି ମାନସିକ ଅବସ୍ଥା ସମ୍ବନ୍ଧୀୟ ପଛକଥା ମୋର କିଛି ମନେ ରହିଲାନି। କିଛିଦିନ ସେଠି ରହି କରଞ୍ଜିଆ ଭଦ୍ରଖ ହେଉଥିବା ଭିତରେ ପୁରୁଣା କଟକ ବନ୍ଧୁଙ୍କ ସହ ଦେଖା ହୁଏ। ବିଶେଷ କରି ରତିକାନ୍ତ। ସେ ଲଗାଇଲା ଥରେ ଚାଲ କଲିକତା ଯିବା-ସ୍ୱାଧୀନତା ଆନ୍ଦୋଳନରେ ଟ୍ରେନିଂ ନେବା। ଆରେ ଟ୍ରେନିଂ କଣ ନେବୁ, ଯାହା କରିବା କଥା ଏଇଠି କରାଯାଇ ପାରିବ। ଖଦଡ଼ ପିନ୍ଧିବା, ଅରଟ ଚଳାଇବା, ଗାଁ ଗାଁ ବୁଲି ଗାନ୍ଧିଙ୍କ କଥା କହିବା, କଂଗ୍ରେସିଆଙ୍କ ସହିତ ମିଶି ଯାହା କରିବା କଥା କରିବା ତ ! ନାଁ ତା' ଇଛା ଅନ୍ୟ ରକମର। ବିଦେଶୀ ଅଫିସରଙ୍କୁ ହଇରାଣ କରିବା, ଦରକାର ପଡ଼ିଲେ ବାଲେଶ୍ୱରବାଟେ ଯାଉଥିବା ନାଆରେ ଯାଇ ସମୁଦ୍ରରୁ ବନ୍ଧୁକ ବାରୁଦ ଆଣି ଯୋଗାଇବା। ଦି'ଥର ଗଲୁ ପହଁରି ପହଁରି ଗୋଟେ ଗୋଟେ ବଡ଼ ବୁକୁଚା ଆଣି ବାଲେଶ୍ୱର ପାଖରେ ଠିକଣା ଜାଗାରେ ପହଞ୍ଚାଇଲୁ। କିନ୍ତୁ ଚୋର ଚୋର ପରି ଲାଗିଲା। ସେ ବୋକଚାରେ କଣ ଥିଲା ଜଣା ନାଇଁ-ଆମକୁ କହିବାକୁ ବାରୁଦ ବନ୍ଧୁକ, କିନ୍ତୁ କିଏ ଜାଣେ ସୁନା କି ଅଫିମ ହୋଇଥିବ। କିଏ ଦେଲା କାହାକୁ, ତା'ବି ଜଣା ନାଇଁ। ନା, ବରଂ ସିଧା କଂଗ୍ରେସ ପତାକା ଧରିବା। ଗାନ୍ଧୀ ମହାତ୍ମା ବାଲେଶ୍ୱର ରହଣି ସମୟରେ ଯାଇ ଡେରା ପକେଇଲୁ ଯିବୁ ଭଦ୍ରଖ ମିଟିଂକୁ। ଗାନ୍ଧୀ ଗଲେ ନାହିଁ ଦେହ ଭଲ ନାଇଁ ବୋଲି। ଆମେ ଗୁରୁବିହୀନ ଚେଲା, ଦେଶ ସେବା କଥା ଭୁଲିଲୁ। ପକେଟ୍ ଫାଙ୍କା ହେଲାପରେ ପୁଣି ଭଦ୍ରଖ ଫେରିଲି। ଦୁର୍ଗାଭାଇ ମୋତେ କରଞ୍ଜିଆ ପଠାଇ ଦେଲେ। ମୁଁ କରଞ୍ଜିଆରେ ରହିଲି।

ହଠାତ୍ ଟ୍ରେନ୍‌ରେ ଗୋଟେ କୋଳାହଳ ଶୁଣାଗଲା। ''ଜଗନ୍ନାଥ ସ୍ୱାମୀକି ଜୟ''-ମାଳତୀ ପାଟପୁର ଷ୍ଟେସନ ଖୁବ୍ ଦୂରରେ ଜଗନ୍ନାଥ ମନ୍ଦିର ଚୂଡ଼ା ଦେଖାଯାଏ। ଜଗନ୍ନାଥ ସ୍ୱାମୀ କି ଜୟ ଶବ୍ଦ ସମସ୍ତ ଯାତ୍ରୀଙ୍କ ଅନ୍ତରରୁ ଭାସି ଆସୁଥାଏ। ଆଜି କାଲିକା ଲୋକଙ୍କ ମନରେ ନାହିଁ ବରଂ



Digitized by srujanika@gmail.com

କେବଳ ମୁହଁରେ ଧର୍ମ ନାମ ଖାଲି । ଧୀରେ ଧୀରେ ପୁରୀ ଷ୍ଟେସନରେ ଗାଡ଼ି ପହଞ୍ଚିଲା । ଇତିମଧ୍ୟରେ ଟ୍ରେନ୍ ମଧ୍ୟରେ ପୁରୀ ପଣ୍ଡାଙ୍କର ଗୁମାସ୍ତାମାନେ ସେମାନଙ୍କର ଯଜମାନ ଖୋଜି ନେଉଥାଆନ୍ତି । ମୁଁ ଟ୍ରେନ୍‌ରେ ସେମାନଙ୍କୁ ଧରାଛୁଆଁ ଦେଇ ନ ଥାଏ । ଷ୍ଟେସନରେ ଓହ୍ଲାଇ ଖଣ୍ଡିଏ ରିକ୍ସା ଧରି ମୋର ଢୋଇଁ, ଯିଏକି ସେତେବେଳେ ପୁରୀ P. W. D. S. D. O. ଥା'ନ୍ତି, ତାଙ୍କ ବସାରେ ପହଞ୍ଚିଲି । ମୋତେ ଦେଖି ସେମାନଙ୍କର କି ଆନନ୍ଦ, ମୋର ମଧ୍ୟ ମନ ଆନନ୍ଦ ହେଲା । ବହୁତ ଦିନପରେ ଝିଅଟିର ସୁଖର ଘରକରଣା ଦେଖି ମନ ଖୁସି ହୋଇଗଲା । ଗାଧୋଇ ପଡ଼ି ଜଳଖିଆ ଟିକେ ଖାଇ ଶୋଇପଡ଼ିଲି । ପ୍ରାୟ ବାରଟା ବେଳେ ଦିବ୍ୟ ଭୋଜନଟାଏ ପକାଇ ପୁଣି ନିଦ୍ରା । ଅପରାହ୍ନ ଚାରିଟା ବେଳେ ଚା ପିଇ ଚାଲିଲି ନିକଟରେ ଥିବା ସମୁଦ୍ର କୂଳକୁ । ସେତେବେଳକୁ ସମୁଦ୍ରବେଳାରେ ଅଳ୍ପ କିଛି ଲୋକ ଥାଆନ୍ତି । ପରେ ପରେ ଲୋକଗହଳିରେ ପୂର୍ଣ୍ଣ ହୋଇଗଲା । ସମୁଦ୍ର କି ପ୍ରଶାନ୍ତ, କି ଗମ୍ଭୀର, କି ଚଞ୍ଚଳ । ଯେତେ ଦେଖିଲେ ନୂଆ ଦିଶୁଥାଇ । ମୁଁ ଏକ ଧ୍ୟାନରେ ସମୁଦ୍ର ସହିତ ବେଳା ଭୂମିର ଲୀଳା ଦେଖୁଥାଏ । କେତେ କାକୁତି ଓ କେତେ ମିନତି ନେଇ ସମୁଦ୍ର ଆସି ବେଳାଭୂମି ଠାରେ ଲୀନ ହେବାପାଇଁ ମୁଣ୍ଡ ପିଟିହୁଏ । କିନ୍ତୁ ନିଷ୍ଠୁର ବେଳାଭୂମି ତା ପ୍ରତି ଟିକିଏ ଦୃଷ୍ଟି ମଧ୍ୟ ଦିଏ ନାହିଁ । ବିଚାରୀ ଅବହେଳିତ ହୋଇ ନିଜ ଚଲାପଥକୁ ପୋଛି ସମତଳ କରି ଦେଉ ଦେଉ ଫେରିଯାଏ । କିଛି ସମୟ ପରେ ପୁଣି କହି କହି ଆସେ, ପୁଣି ଫେରେ । ଏତେ ବର୍ଷ ପରେ ଏକା ଏକା ଅବସ୍ଥାରେ ମନଟା ବି ଅତୀତକୁ ଫେରି ଫେରି ଯାଇଥାଏ । ଗତଥର ମୋ ମଝିଆ ଭାଇ ସହ ଆସି ଏମିତି ବହୁ ସମୟ ବସିଥିଲୁ । ମଝିଆ ଭାଇ ମୁଁ ଆସିବା ବେଳକୁ ଶୁକୃଳି ଯାଇଥିଲେ । ସେ ମୋ ସହ ବନ୍ଧୁଘର ବୁଲିବାକୁ ଭଲ ପାଆନ୍ତି । ଏଥର ଆସି ନ ଥିବାରୁ ସମୁଦ୍ର କୂଳରେ ବସିଲେ ତାଙ୍କରି କଥା ମନେପଡୁଥାଏ ।

ସେ ସବୁବେଳେ କହନ୍ତି, ସମୁଦ୍ର କୂଳଟା ଖାଲି ଖାଲି । କଣ ଝାଉଁ ଲଗାଇ ହୁଅନ୍ତା ନାହିଁ ? ସୁନ୍ଦର ଝାଉଁବଣଟେ ସୃଷ୍ଟି କରାଯାଇପାରନ୍ତା । ସବୁଜ ଜଙ୍ଗଲ ସହ ନୀଳ ସମୁଦ୍ର କି ସୁନ୍ଦର ଆବହାଓ୍ୱା ତିଆରି କରନ୍ତା ! ଜଙ୍ଗଲ ଦେଖିଲେ ମୁଁ ପାଗଳ ହୁଏ । ଆମେ ଜଙ୍ଗଲିଆ-ଜନ୍ମ ଜଙ୍ଗଲରେ, ବଢ଼ିଚୁ ବି ମୟୂରଭଞ୍ଜର ଜଙ୍ଗଲ ପରିବେଶ ଭିତରେ ।

କରଞ୍ଜିଆ ମୟୂରଭଞ୍ଜର ଗୋଟିଏ ଜଙ୍ଗଲ ପୂର୍ଣ୍ଣ ଆଦିବାସୀ ଅଞ୍ଚଳ, ସିମ୍ଳିପାଳ ପର୍ବତମାଳା ଓ ତା ପାଦଦେଶର ଘନ ଶାଳ ଜଙ୍ଗଲପାଇଁ ପ୍ରସିଦ୍ଧ । ସେତେବେଳେ କରଞ୍ଜିଆ ଚାରିପଟେ ଜଙ୍ଗଲ ପୂରି ରହିଥିଲା । ବଣ ତ ବଣ ଅଗନା ଅଗନୀ ବଣ ଯାହାକୁ କୁହାଯାଏ । ଜଙ୍ଗଲରେ ବାଘ, ଭାଲୁ, ହାତୀ, ହରିଣ, ଗୟଳ, ସମ୍ବର, ବରାହ ଓ ବଣ କୁକୁର ଆଦି ପଶୁ ଏବଂ ହରଡ଼ ଚଢ଼େଇ, ମୟୂର, ସର ଚଢ଼େଇ, ନାକୁଆ ଚଢ଼େଇ ଆଦି ବିଭିନ୍ନ ପକ୍ଷୀ ଏ ଅଞ୍ଚଳରେ ଭରି



Digitized by srujanika@gmail.com

ରହିଥିଲେ । କେବଳ ବାରିପଦା ସଦର ଅଞ୍ଚଳରେ କିଛି କିଛି ଗାଁ ଗଣ୍ଡା ଥିଲା, ମାତ୍ର ରାଇରଙ୍ଗପୁର ପାଞ୍ଚପୀଢ଼ ଓ କପ୍ତିପଦା ସବ୍‌ଡିଭିଜନମାନଙ୍କରେ ବନବସତି ବହୁତ କମ୍ ଥିଲା । ଗ୍ରାମଗୁଡ଼ିକ ସବୁ ନିବିଡ଼ ଜଙ୍ଗଲ ମଧ୍ୟରେ ଥିବାରୁ ଗୋଟିଏ ଗାଁରୁ ଅନ୍ୟ ଗୋଟିଏ ଗାଁକୁ ଯିବାକୁ ହେଲେ ଦିନବେଳେ ମଧ୍ୟ ସାଙ୍ଗସାଥି ହୋଇ ଦୁଇ ଚାରି ଜଣ ଠେଙ୍ଗା ବାଡ଼ି ବାଲା ବର୍ଚ୍ଛା ସହ ନ ବାହାରିଲେ ଯାଇ ହେଉ ନ ଥିଲା । କେବଳ କଳା ଡିହରେ ଥିବା ଗଛ ବ୍ୟତୀତ ଅନ୍ୟ କୌଣସି ଜମିରେ ଗଛ ଉପରେ କିଛି ଅଧିକାର ନ ଥିଲା । ମୟୂରଭଞ୍ଜ ଜଙ୍ଗଲରେ ଶାଳ ପ୍ରଧାନ । ଏତଦ୍‌ବ୍ୟତୀତ ପିଆଶାଳ, ଗମ୍ଭାରୀ, ଶିଶୁ, ଚମପା, କଇମ, ମହୁଲ, କୁସୁମ, ଅସନ ଆଦି ମଧ୍ୟ ବହୁ ପରିମାଣରେ ଦେଖିବାକୁ ମିଳେ । ଆଦିବାସୀ ଜଙ୍ଗଲଜାତ ଦ୍ରବ୍ୟ ଉପରେ ନିର୍ଭର କରି ବଞ୍ଚି ରହୁଥିଲେ । ଯେଉଁ ଅଳ୍ପ ଚାଷ ହେଉଥିଲା ତା ମଧ୍ୟରୁ ଅଧିକାଂଶ ହାତୀ ଓ ହରିଣ ଆଦି ପଶୁ ନଷ୍ଟ କରୁଥିଲେ । ମହାରାଜ ଶ୍ରୀ ରାମଚନ୍ଦ୍ର ଜଙ୍ଗଲ ପ୍ରତି ବିଶେଷ ଦୃଷ୍ଟି ଦେଇଥିଲେ । ତଦ୍ୱାରା ରାଜ୍ୟର ଆୟସହ ପ୍ରଜାଙ୍କ ଅସୁବିଧା ଦୂର କରିବାପାଇଁ ଚୁକ୍ତି କରିଥିଲେ । ସେ ସମୟରେ କେବଳ Railway Sleeper ବ୍ୟତୀତ ଅନ୍ୟ କୌଣସି କାମରେ କେହି କାଠ ବ୍ୟବହାର ବା କାରବାର ନ କରିବାକୁ ବଡୁଆ କମ୍ପାନୀ ଚୁକ୍ତି କରିଥିଲେ । ଗଛ କାଟିବା ବାବଦକୁ କେବଳ Railway Sleeper ଉପରେ C. F. T ଟଙ୍କାରେ ଚାରିଅଣା ରୟାଲଟି ଦେବାର ବ୍ୟବସ୍ଥା ଥିଲା । ତା ଛଡ଼ା ପ୍ରତି କଟାଗଛ ପିଛା ଚାରୋଟି ନୂଆ ଗଛ ଲଗାଇବାର ବ୍ୟବସ୍ଥା ଥିଲା । କମ୍ପାନୀ ତରଫରୁ ୱେଟ୍ ସାହେବ ବୋଲି ଜଣେ ଗୋରା କର୍ମଚାରୀ ଯଶିପୁରଠାରେ ଅବସ୍ଥାପିତ ହୋଇଥିଲେ ଓ ସେ ଗଛ କାଟିବା ସହ ଲଗାଇବା କାମ ମଧ୍ୟ ସୁଚାରୁରୂପେ କରୁଥିଲେ ।

କରଞ୍ଜିଆରେ ଲୋକ ସଂଖ୍ୟା ସେତେବେଳେ ପାଞ୍ଚ ଶହ । କୌଣସି ଗାଁରୁ ଅନ୍ୟ ଗୋଟିଏ ଗାଁକୁ ରାସ୍ତା ନ ଥିଲା । ଏହି ବଡୁଆ କମ୍ପାନୀ ଗଛ କାଟି ବିଭିନ୍ନ ଗାଁରୁ କାଠ ବାଦାମପାହାଡ଼ ରେଳ ଷ୍ଟେସନ ପର୍ଯ୍ୟନ୍ତ ନେବାପାଇଁ ଗୋରୁ ଗାଡ଼ି ଯିବାପରି ରାସ୍ତା ତିଆରି କରିଥିଲା ଏବଂ ସେତେବେଳେ କେବଳ ପଣ୍ଡା ବା ବଳଦ ଗାଡ଼ିରେ କାଠ ଟଣା ହେଉଥିଲା । ଯଶିପୁର ଭଣ୍ଡନ୍ ନଦୀ ଛଡ଼ା ଅନ୍ୟ କୌଣସି ନଦୀ ନାଳରେ ପୋଲ ନ ଥିଲା । ତେଣୁ ଗୋଟିଏ ଗୋରୁଗାଡ଼ିରେ ପ୍ରାୟ ଦଶ ସିଏଫଟି ଓ ପଣ୍ଡା (ଅଣ୍ଡିରା ମଇଁଷି) ଗାଡ଼ିରେ ପନ୍ଦର ସଏଫ୍‌ଟି ପର୍ଯ୍ୟନ୍ତ କାଠ ନେଉଥିଲେ ଏବଂ ଗାଡ଼ି ଯିବା ଆସିବାପାଇଁ ପ୍ରାୟ ସାତଦିନ ଲାଗୁଥିଲା । ସେହିପରି ସିମୁଳିପାଳ ପାହାଡ଼ ଭିତରକୁ ଯଥା- ଗୁଡ଼ଗୁଡ଼ିଆ, ଚହଲା, ନଅଣା, ଟିଣଡିହା, ମେଘାସନ ଆଦି ସ୍ଥାନକୁ ମଧ୍ୟ ଗୋରୁଗାଡ଼ି ରାସ୍ତା ସେହି କମ୍ପାନୀ କରିଥିଲା ଏବଂ ସେଠାରୁ ବାଦାମପାହାଡ଼କୁ ଭଡ଼ା ସିଏଫ୍‌ଟି ପ୍ରତି ଏକ ଟଙ୍କା ଥିଲା । ବାଘ ଭୟରେ ଏକ ସଙ୍ଗରେ ଶହେ ଖଣ୍ଡ ଗାଡ଼ି ସାଙ୍ଗହୋଇ ଯାଉଥିଲେ । ବାଟରେ ବହୁତ ଗୋରୁ ପଣ୍ଡା ଜଖମ ହେଉଥିଲେ, କିଛି ମରୁଥିଲେ ଏବଂ ଗାଡୁଆମାନେ ମଧ୍ୟ ବେମାର ଆଦି



Digitized by srujanika@gmail.com

ହୋଇ ବହୁତ କଷ୍ଟ ଭୋଗୁଥିଲେ । ବ୍ରିଟିଶ ସରକାର ଅଧିକ Rail Line ତିଆରି କରୁଥିବାରୁ କାଠ ସ୍ଲିପରର ଚାହିଦା ଦିନକୁ ଦିନ ବଢ଼ିବାକୁ ଲାଗିଲା । Railway Sleeper କାଟିବା ପରେ ଗଛର ବାକି ଅଂଶ ସେହି ଗଛମୂଳେ ପଡ଼ି ପଚୁଥିଲା ଏବଂ ପାହାଡ଼ରେ ପ୍ରତି ବର୍ଷ ନିଆଁ ଲାଗି ତା ଭିତରୁ ଅଧିକାଂଶ ପୋଡ଼ି ଧ୍ୱଂସ ହୋଇ ଯାଉଥିଲା । ଯାହାହେଉ ରାସ୍ତା ଘାଟ ହୋଇ ଲୋକଙ୍କର ଚଳପ୍ରଚଳ ସୁବିଧା ହେବାରୁ ସାଧାରଣ ଲୋକଙ୍କ କାମରେ ଲାଗିଲା । ବଡୁଆ କମ୍ପାନୀ ସହିତ ପାଞ୍ଚଫୁଟର ଉର୍ଦ୍ଧ୍ୱ ଗୋଲାଇ ଶାଳ ଗଛ କାଟିବାର ଚୁକ୍ତି ହୋଇଥିଲା । ଅନ୍ୟ ଗଛ ତା'ର ଦରକାର ନ ଥିଲା ବା ସେଥିପାଇଁ ବଜାର ମଧ୍ୟ ନ ଥିଲା । ବଡ଼ ବଡ଼ ଗଛ କଟା ହେବାପରେ ଲୋକେ ଗାଁ ପରିସର ମଧ୍ୟ ବଢ଼ାଇଲେ ଓ ଚାଷ ଜମି ଆବାଦ କରିବାକୁ ଲାଗିଲେ ।

୧୯୩୯ସାଲରେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୋଇଗଲା ଏବଂ ଅସ୍ଥାୟୀ ପୋଲ ତଥା ରେଲ ଲାଇନ ଆଦି ତିଆରି କରିବାକୁ ପ୍ରଚୁର କାଠର ପ୍ରୟୋଜନ ହେବାରୁ ରାଜାଙ୍କ ତରଫରୁ ଅନେକ ଛୋଟ ଛୋଟ କଣ୍ଟ୍ରାକ୍ଟର ଲଗାଯାଇ ଶାଳ ତଥା ଅସନ ଆଦି ବିଭିନ୍ନ ଗଛ ବହୁ ପରିମାଣରେ କଟା ହେଲା ଏବଂ ସେତେବେଳକୁ ମଟର ସଂଖ୍ୟା କମି ଯାଇଥିବାରୁ ବାଦାମପାହାଡ଼, ବାରିପଦା ଓ ରାଇରଙ୍ଗପୁର ଆଦି Rail Station ମାନଙ୍କୁ ବୁହାଯାଇ ବଡ଼ ବଡ଼ ଡିପୁ କରାଗଲା । ଏଥିରେ ଲକ୍ଷ ଲକ୍ଷ ଗଛ କଟା ହୋଇଗଲା, ରାସ୍ତା ନିର୍ମାଣ ହେଲା, ଗାଁ ଗଣ୍ଡାରୁ ଗଛ ବହୁତ ପରିମାଣରେ ସଫା ହୋଇଗଲା । ଏଇଭଳି ଭାବରେ ଗଛ କଟା ହୋଇଯିବାରୁ ଲୋକେ ଚାଷ ଜମି ଆବାଦ କରିବାକୁ ଲାଗିଲେ ଏବଂ ଚାଷ ଜମି ବଢ଼ିଲା । ସେତେବେଳେ କାଠ ବୋହିବାକୁ ଯେଉଁ ଟ୍ରକ୍ ଆସୁଥିଲା ତାର ଦାମ ଗୋଟି ତିନିହଜାର ଟଙ୍କା ମଧ୍ୟରେ ଏବଂ ଏଗୁଡ଼ିକ ଷାଠିଏରୁ ଅଶୀ ସିଫ୍‌ଟି ପର୍ଯ୍ୟନ୍ତ କାଠ ବୋହି ପାରୁଥିଲେ । ସେତେବେଳ କରତିଆ ମଜୁରି ଥିଲା ଦିନକୁ ଆଠଅଣା, କୁଲି ମଜୁରି ଦୁଇ ଅଣାରୁ ଆରମ୍ଭ କରି ଚାରି ଅଣା ପର୍ଯ୍ୟନ୍ତ ହୋଇଥିଲା ଏବଂ ଏହି ଯେଉଁ ନୂଆ ଟ୍ରକ୍‌ମାନ ଆସିଲା ସେଗୁଡ଼ିକର ଡ୍ରାଇଭରମାନଙ୍କର ମାସିକ ଦରମା ଥିଲା କୋଡ଼ିଏରୁ ପଚିଶ ଟଙ୍କା । ହେଲ୍‌ପର୍‌ମାନେ ପାଉଥିଲେ ଦୈନିକ ଚାରି ଅଣାରୁ ଆଠଅଣା ଭିତରେ । ଅବଶ୍ୟ ଏମାନଙ୍କ fooding ମାଲିକ ବହନ କରୁଥିଲେ । ମୋର ଭାଇ ଜଙ୍ଗଲ ବିଭାଗରେ ରେଞ୍ଜର ଥିବାରୁ ଅଧିକାଂଶ ଜାଗା ଦେଖିବାର ସୁଯୋଗ ମିଳିଥିଲା । କିନ୍ତୁ ସିମୁଳିପାଳ ପରି ସୁନ୍ଦର ପାହାଡ଼, ଜଙ୍ଗଲ, ଝରଣା ସତରେ ପ୍ରାକୃତିକ ସୌନ୍ଦର୍ଯ୍ୟର ଗନ୍ତାଘର । ସବୁବେଳେ ଭୟ ସଙ୍କୁଳ ପରିସ୍ଥିତିରେ ଗତି କରିବାକୁ ହୁଏ, କାରଣ ମହାବଳ ବାଘ ଓ ହାତୀ ପଲ ଅଧିକାଂଶ ସମୟରେ ଭେଟ ହୋଇ ଯାଉଥିଲେ । ଏପରିକି ହଜାର ହଜାର ମୟୂର ଦଳ ବେଳେବେଳେ ଆମ ଉପରଦେଇ ଉଡ଼ି ଯାଉଥିଲେ । ତା ଛଡ଼ା ସାପ ଭୟ ମଧ୍ୟ ଥିଲା । ଏ ସବୁ ସତ୍ତ୍ୱେ ସିମୁଳିପାଳର ବିଭିନ୍ନ ପ୍ରାକୃତିକ ଦୃଶ୍ୟ ତଥା ବିଭିନ୍ନ ପ୍ରକାରର ପଶୁ ପକ୍ଷୀଙ୍କୁ ଦେଖି ଆତ୍ମହରା ହୋଇଯାଉଥିଲି । ରାଜାଙ୍କ ସମୟରେ



Digitized by srujanika@gmail.com

କରଞ୍ଜିଆ ସମେତ ବହୁ ଡାକବଙ୍ଗଳା ତିଆରି ହୋଇଥିଲା । ସେ ସବୁ ଜଙ୍ଗଲ ଧାରାରେ ନିର୍ମିତ ହୋଇଥିଲା । ତେଣୁ ଏ ସବୁ ହିଂସ୍ର ପଶୁଙ୍କ ଭୟରେ କେହି କେବେ ଏକୁଟିଆ ଡାକବଙ୍ଗଳାମାନଙ୍କରେ ରହୁ ନ ଥିଲେ ଏବଂ ସନ୍ଧ୍ୟା ପରେ କବାଟ କିଳି ରହୁଥିଲେ । ଏପରିକି କରଞ୍ଜିଆ ଡାକବଙ୍ଗଳା ହତାକୁ ଦିନବେଳେ ମଧ୍ୟ ପଲ ପଲ ହରିଣ ପଶି ଆସୁଥିଲେ । ଆମ ପିଲାମାନେ ସ୍କୁଲରେ ପଢ଼ିବା ସମୟରେ ସନ୍ଧ୍ୟା ହୋଇଗଲେ ସେ ରାସ୍ତାରେ ଭାଲୁ ଭୟରେ କେହି ଆସୁ ନ ଥିଲେ ।

୧୯୪୪ ସାଲରେ ବତୁଆ କମ୍ପାନୀଙ୍କର ମୟୁରଭଞ୍ଜରୁ କାଠ ନେବା ଚୁକ୍ତିର ମିଆଦ ପୂରି ଯାଉଥିବାରୁ ତତ୍‌କାଳୀନ ମହାରାଜା ଶ୍ରୀ ପ୍ରତାପ ଚନ୍ଦ୍ର ଭଞ୍ଜଙ୍କ ନିକଟରେ ଆଉ କୋଡ଼ିଏ ବର୍ଷର ଚୁକ୍ତିପାଇଁ ଆବେଦନ କରିଥିଲେ । କିନ୍ତୁ ସେତେବେଳକୁ କାଠର ଦର ଓ ଚାହିଦା କମି ଯାଇଥିବାରୁ ଏବଂ ଏ କମ୍ପାନୀ ଶେଷ ବେଳକୁ ଅତ୍ୟଧିକ ଗଛ କାଟିଥିବାରୁ ଜଙ୍ଗଲ ପ୍ରିୟ ମହାରାଜା ଚୁକ୍ତି ମିଆଦ ଆଉ ବଢ଼ାଇଲେ ନାହିଁ । ସେହି ସମୟରେ F. G. Gagliadi ଜଣେ ଇଟାଲୀୟ ସାହେବଙ୍କୁ ଚିଫ୍ ଫରେଷ୍ଟ ଅଫିସର ହିସାବରେ ମହାରାଜା ଆଣିଥିଲେ । ଗାଗଲିଆଡ଼ି ସାହେବ ନିଃସନ୍ତାନ ଥିଲେ, କିନ୍ତୁ ଦୁଇଟି ବଡ଼ କୁକୁର ପୋଷି ଥିଲେ । କହନ୍ତି ପ୍ରତିଦିନ ଗୋଟିଏ ଖାସି ମାଂସ ତାଙ୍କୁ ଦିଆ ହେଉଥିଲା । ସେ ସାହେବ ତତ୍‌କାଳୀନ ରେଞ୍ଜର ଫରେଷ୍ଟର ଆଦିଙ୍କୁ ସାଙ୍ଗରେ ଧରି ଏବଂ ସାଥିରେ ତାଙ୍କର ସ୍ତ୍ରୀ ଓ ଏହି ଦୁଇ କୁକୁରଙ୍କୁ ଧରି ସାରା ସିମୁଳିପାଳ ପର୍ବତକୁ ପାଦରେ ବୁଲି ଜଙ୍ଗଲ ଭିତରେ ମାସାଧିକ କାଳ ରହି ଟପୋମେପ୍ ଧରି କୁପ୍ ଓ ଲଟ ଆଦି ନିର୍ଣ୍ଣୟ କରିଥିଲେ ଏବଂ ଜଙ୍ଗଲ ସୁରକ୍ଷା ବିଷୟରେ ମହାରାଜାଙ୍କୁ ତାଙ୍କର ପରାମର୍ଶ ଦେଇଥିଲେ । ତାଙ୍କର ପରାମର୍ଶ ଅନୁସାରେ ମହାରାଜା ସାରା ମୟୁରଭଞ୍ଜର ଚାରି ପାଖରେ ପ୍ରତି ପନ୍ଦର କୋଡ଼ିଏ ମାଇଲ ଅନ୍ତରରେ ଗୋଟିଏ ଲେଖାଏଁ ଫରେଷ୍ଟ ଅଫିସ ଆରମ୍ଭ କରିଥିଲେ ଏବଂ ପ୍ରତି ସବ୍‌ଡିଭିଜନରେ ଗୋଟିଏ ଲେଖାଏଁ ରେଞ୍ଜ ଅଫିସ ପ୍ରତିଷ୍ଠା କରି ଯାଇଥିଲେ । ରେଞ୍ଜର କାମ ପରିଦର୍ଶନପାଇଁ ଜଣେ ଲେଖାଏଁ ଇନ୍ସପେକ୍ଟର ଷାଠିଏ ଟଙ୍କାର ବେତନ ପାଉଥିଲେ । ଆମର ବଡ଼ବାପା ପୁଅ ଦୁର୍ଗାଭାଇ ରେଞ୍ଜର ହିସାବରେ ଚାକିରିରେ ଜଏନ୍ କରିଥିଲେ ଓ ତାଙ୍କରି ମାଧ୍ୟମରେ ଆମ ପରିବାର ବିଶେଷ କରି ମୋର ଜଙ୍ଗଲ ସହିତ ସମ୍ପର୍କ ଘନିଷ୍ଠ ହୋଇଥିଲା ।

ଜଙ୍ଗଲ ଓ ମୋ ରେଞ୍ଜର ଅଫିସର ବଡ଼ଭାଇଙ୍କୁ ନେଇ ଗୋଟେ ମଜାକଥା ମନେ ପଡୁଛି । ରେଞ୍ଜର ଭାଇ ଇନ୍ସପେକ୍ଟର ହୋଇ ରିଟାୟାର କଲେ । ବାଙ୍ଗିରିପୋଷି ବଙ୍ଗଳା ଗାଁରୁ ବେଶ୍ ଦୂର । ସିମିଳିପାଳ ପାହାଡ଼ର ଘାଟି ତଳେ ଜଙ୍ଗଲ ଭିତରେ ସେଇଠି ତାଙ୍କପାଇଁ ବିଦାୟଭୋଜିର ବ୍ୟବସ୍ଥା ହୋଇଥିଲା । ଫରେଷ୍ଟ ଡିପାର୍ଟମେଣ୍ଟର ଅଫିସର ସବୁ ବାରିପଦାରୁ ଆସିଥିଲେ । ଆଉ ପାଞ୍ଚପୀଢ଼ ବାମନଘାଟୀ ଓ ସହରର ଏପାଖ ସମସ୍ତ ଜଙ୍ଗଲ କର୍ମଚାରୀ । ବିଦାୟମାନେ ଭୋଜି ଭାତ ।



Digitized by srujanika@gmail.com

ଘର ଭିତରେ ଓ ବାରନ୍ଦାରେ ଟେବୁଲ ଚେୟାର ଲାଗିଚି । ବଡ଼ ବଡ଼ ଅଫିସରଙ୍କ ସହ ବାର୍ଡ଼କମ୍ପାନୀ ଲୋକ ସେଠି କିଛି ବଦେଶୀ ପାନୀୟ ସହ ପୋଡ଼ା ମାଂସ ଚାଖୁଛନ୍ତି । ଏପାଖରେ ପଙ୍ଗତ ଆରମ୍ଭ ହୋଇଗଲାଣି । ସନ୍ଧ୍ୟା ହେଉ ହେଉ ଗାର୍ଡ଼ କେତେକ ଫେରିଯିବେ ରାତିରାତି । ଜଙ୍ଗଲ ରାସ୍ତା ହିଂସ୍ରଜନ୍ତୁ ଭୟ । ଖାଇବା ତଦାରଖ ଫରେଷ୍ଟର ବାବୁମାନେ କରୁଥାଆନ୍ତି । ମୋତେ ଭାଇ କହିଥିଲେ "ମୁଁ ସେଆଡ଼େ ସାଇବମାନଙ୍କ ସହ ବ୍ୟସ୍ତ ରହିବି, ତୁ ଆଦିବାସୀ ଗାର୍ଡ଼ଗୁଡ଼ାଙ୍କର ଖାଇବା ଟିକେ ବୁଝିବୁ ଆଉ ସରିଆସିଲେ ମୋତେ ଡାକିଦେବୁ-ତାଙ୍କଠାରୁ ସବୁ ବିଦାୟ ନେବି ।" ମୁଁ ବୁଲି ବୁଲି ନଜର କରୁଥାଏ ସମସ୍ତଙ୍କୁ ଠିକ୍ ଠିକ୍ ବଢ଼ା ହୋଉଛି କି ନାଇଁ । ତଳିଆ କର୍ମଚାରୀଙ୍କୁ ଉପେକ୍ଷା ଯେପରି ନ ହେଉ । ଭାଇଙ୍କ ଶେଷ ଭୋଜି, ଏଣୁ ପତ୍ର ପତ୍ର ମୁଁ ନିରୀକ୍ଷଣ କରୁଥାଏ ।

କଲିକତାରୁ ଆସିଥାଏ ରାଜଭୋଗ । ଥରେ ଦେଇ ଦ୍ୱିତୀୟଥର ଆରମ୍ଭ କଲାବେଳକୁ ନଜର କଲି ଯା ତା ମୁହଁକୁ ଚହାଁ ଚାହିଁ ହୋଇ ପତ୍ର ତଳକୁ ମିଠାଇ ଠେଲି ଦେଉଛନ୍ତି । ମୁଁ ଚିହ୍ନା ଗାର୍ଡ଼ ଜଣକ ପାଖକୁ ଯାଇ ପଚାରିଲି "କଣ ହେଲାରେ ମିଠା କଣ ବାସି ହୋଇ ଯାଇଚି କି ?" ସେ ମୋ ମୁହଁକୁ ଡରିଲା ପରି ଚାହିଁ ବାଧରେ ନିମ୍ନ ସ୍ୱରରେ କହିଲା "କହ ନାଇଁ ବାବୁ, ଗାଈର ଟିଙ୍କ ସବୁ ଛେନା ଭିତରେ ଅଛି ।" ମୁଁ ହଠାତ୍ ଚମକି ପଡ଼ିଲି-ତା'ପରେ କଥାଟା ବୁଝିଲି ରାଜଭୋଗ ଭିତରେ କିସ୍‌ମିସ୍‌ଟା ଫୁଲିଚି, ତାଙ୍କର ସବୁ ମନରେ ପଶିଚି ଟିଙ୍କଟା ବୋଲି । ଦ୍ୱିତୀୟ ରାଉଣ୍ଡ ମିଠାକୁ ସବୁ ଭାଙ୍ଗି ଟିଙ୍କ ବାହାର କରି ଖିରି ସାଙ୍ଗରେ ଦେଲାରୁ ଖାଇଲେ ।

ସତରେ ଜଙ୍ଗଲ ବିଭାଗ ହେଲା ରାଜା ଶାସନର ସୁନାମୁଣ୍ଡା । ପରେ ଓଡ଼ିଶାରେ ବହୁ କଞ୍ଜରଭେଟରମାନଙ୍କ ପାଖରୁ ଶିଖିଛି ମୟୁରଭଞ୍ଜ ଜଙ୍ଗଲ କୁଆଡ଼େ ଡେରାଡୁନ୍ ଫରେଷ୍ଟ କଲେଜରେ ପଢ଼ା ହେଉଥିବା ପାଠ ବହିର ଆଦର୍ଶ ଜଙ୍ଗଲ ବ୍ୟବସ୍ଥା । ମଝିରେ ପାହାଡ଼ ଓ ତା ଚାରିପଟେ ରିଜର୍ଭ ଜଙ୍ଗଲ ଆଉ ତା ଚାରିପଟେ ଘେରି ରହିଚି ଲୋକଙ୍କ ବ୍ୟବହାର୍ଯ୍ୟ ଜଙ୍ଗଲ । ତାପରେ ଜନବସତି । ଘନ ଜଙ୍ଗଲ ଭିତରକୁ ମହୁ, ଝୁଣା, ମହୁଲ ଇତ୍ୟାଦି ଛଡ଼ା ଦୈନନ୍ଦିନ କାଠ ଇତ୍ୟାଦିପାଇଁ ଯିବା ଦରକାର ନାଇଁ । ଜାଳେଣିପାଇଁ ଭାର ବା ସ୍ତ୍ରୀ ଲୋକ ଗାଁ ପାଖ ଜଙ୍ଗଲରୁ କାଟି ନେବାପାଇଁ ଆପତ୍ତି ନାଇଁ । ଶଗଡ଼ ପିଛା ବିଭିନ୍ନ ସମୟରେ ଏକପଇସାରୁ ଆରମ୍ଭକରି ୧୯୪୮ ସାଲକୁ ଆଠଅଣା ପଡୁଥିଲା । ଘର ତିଆରିପାଇଁ ମଧ ବିନା ପଇସାରେ ଦୁଇଟି ବଡ଼ଗଛ କାଟି ଆଣିବାପାଇଁ କେବଳ ଶୁଳ୍କ (Royalty) ପଡୁଥିଲା ।

ଜଙ୍ଗଲ ବିଭାଗର ପରିଚାଳନାପାଇଁ Mayurbhanj Forest Manual ତିଆରି ହୋଇଥିଲା । ଏହି Manual ଅନୁଯାୟୀ ପ୍ରଜାମାନଙ୍କର ଦରକାର ମୁତାବକ କାଠ ଯୋଗାଇବାର ବ୍ୟବସ୍ଥା ହୋଇଥିଲା ଏବଂ ବନ୍ୟ ଜାତ ଦ୍ରବ୍ୟ ସଂଗ୍ରହର ଆଇନ ପ୍ରଣୟନ ହୋଇଥିଲା । ୧୯୪୨ ସାଲରେ ଫରେଷ୍ଟ ଡିଭିଜନମାନ ସୃଷ୍ଟି କରାହୋଇଥିଲା ଏବଂ କରଞ୍ଜିଆର ଶ୍ରୀଯୁକ୍ତ ଶରତ ଚନ୍ଦ୍ର



Digitized by srujanika@gmail.com

ଦାସ ଏଠାକୁ ପ୍ରଥମେ D. F. O. ହିସାବରେ ଆସିଥିଲେ । ସେତେବେଳେ ଏହି କରଞ୍ଜିଆ ଡିଭିଜନର ନାମ Western Division ଥିଲା । ରାଇରଙ୍ଗପୁରରେ ଥିଲା Northern Division, ଉଦଲାରେ Southern Division ଏବଂ ବାରିପଦାରେ Eastern Division ଥିଲା । ଦିନକୁ ଦିନ କାଠର ଚାହିଦା ବଢ଼ିବାକୁ ଲାଗିବାରେ ଏବଂ ବାହାର ବେପାରୀ ଆସି କାଠ କିଣିବାକୁ ଆଗ୍ରହୀ ହେବାରୁ କାଳକ୍ରମେ କୁପ୍ ସବୁ ସର୍ବସାଧାରଣ ନିଲାମ ଯୋଗେ ବିକ୍ରୟ କରାଗଲା ଏବଂ ବହୁ ଆଡ଼୍ଭୁ ବିଶେଷତଃ ବାହାର ରାଜ୍ୟରୁ କଣ୍ଟ୍ରାକ୍ଟର ସବୁ ଆସି ଏହି ନିଲାମ ଯୋଗେ ଜଙ୍ଗଲ ନେଇ ବିଭିନ୍ନ କାଠ ସବୁ ରାଜ୍ୟ ବାହାରକୁ ନେଇଗଲେ ।

ଆମର ଶୁକୁଳିରେ ଗୋଟାଏ ଚାଷଘର ଥାଏ । ସେଠାରେ ଚାଷ ଜମି ଓ ଧାନ ବହୁତ ଥାଏ । ଗୋବିନ୍ଦ ମହାନ୍ତି ବୋଲି ଜଣେ ଗୁମାସ୍ତା ସେଠାରେ ଥାଇ ଦେଖାଶୁଣା କରନ୍ତି । ଆମ ଘର ଠାରୁ ଶୁକୁଳି ବାରମାଇଲ । ମଝିରେ ମଝିରେ ତଦାରଖ କରିବାପାଇଁ ବଡ଼ ଓ ସାନ ଭାଇ ଯାଆନ୍ତି । ମୁଁ ମଧ କେବେ କେମିତି ଚାଲିଯାଏ । ଅବଶ୍ୟ ମୋର ମତଲବ ଖାଇବାରେ-ମୋର ଖାଇବାର ରୁଚି ବଦଳାଇବାପାଇଁ । ମୁଁ ଗଲେ ମୋପାଇଁ ହଂସ ମରାଯାଏ । କୁକୁଡ଼ା ସେ ସମୟରେ ଉଚ୍ଚ ଜାତିର ଲୋକ ଖାଉ ନ ଥିଲେ । ଅବଶ୍ୟ ମଫସଲରେ ଆମେ କେତେବେଳେ ଖାଉ । ମଦ ଖିଆ ତ ବହୁତ ଦୂରର କଥା । ବର୍ତ୍ତମାନ ଆଦିବାସୀ ବୋଲାଉଥିବା ଜାତିଙ୍କ ମଧ୍ୟରୁ କେବଳ କୋହ୍ଲ, ମାଝି, ସାନ୍ତାଳମାନେ ହାଣ୍ଡିଆ ଖାଉଥିଲେ । ତତ୍ସମୟରେ ମଦ କୁକୁଡ଼ା ଖିଆ ଗୋଟାଏ ନିତାନ୍ତ ସାମାଜିକ ଅପରାଧ ଥିଲା । କିନ୍ତୁ ଆଜିକାଲି ମହା ଭଦ୍ର ସମାଜର ଏହା ଗୋଟାଏ ଅଙ୍ଗ । ଅବଶ୍ୟ ବ୍ୟଥିତ ହେବାର ନାହିଁ । ସମୟ ସହ ସମାଜର ପରିବର୍ତ୍ତନ ସବୁଦିନେ ଗ୍ରହଣ କରିବାକୁ ହେବ । ମୋର ଗୋଟାଏ ଅଭ୍ୟାସ ପିଲାଦିନୁ ଡାଲି ନ ହେଲେ ମୁଁ ଖାଇପାରେ ନାହିଁ । ବାବା ଏ କଥା ଗୋବିନ୍ଦକୁ କହିଥିଲେ । ସେ କଥା ତାଙ୍କର ମନେ ନ ଥାଏ । ମୁଁ ଯାଇ ଶୁକୁଳିରେ ପହଞ୍ଚିଲି, ସେ ସେଠା ଘର ବାଡ଼ି ଆଡ଼କୁ ଯାଇ ପାଟି କରି କହନ୍ତି ''ଏ ରତନା ବାୟାବାବୁ ଆସିଛି ଡାଲି ନେଇ ଆସିବୁ, ତା' ବାପ କହିଛନ୍ତି ଡାଲି ନ ହେଲେ ସେ ଖାଇବ ନାହିଁ।'' କିଛି କ୍ଷଣ ପରେ ଦେଖେ ରତ୍ନା ସାହୁ ଭଜା ହରଡ଼ ଡାଲି ନେଇ ଉପସ୍ଥିତ । ଏହି ଘଟଣାଟା ମୁଁ ଯେତେଥର ଶୁକୁଳି ଯାଇଛି, ଘଟିଛି । ସେଠାରେ ମୁଁ ଦୁଇ ଦିନ ରହି ଓ ଏକ ମାଇଲ ଦୂରରେ ଖିଚିଙ୍ଗ୍‌ରେ ଥିବା କିଚକେଶ୍ୱରୀ ଠାକୁରାଣୀ ଦର୍ଶନ କରି ଘରକୁ ଫେରି ଆସେ ।

ସେ ସମୟରେ କରଞ୍ଜିଆରେ ତିନି/ଚାରିଖଣ୍ଡ ସାଇକେଲ୍ ଥାଏ । ଆମର ପ୍ରଥମେ ଯେଉଁ ସାଇକେଲ୍ ଥାଏ ତାହାର ନାମ New Hudson । ଗୋଟେ ମଜାକଥା ମନେ ପଡ଼ିଲା । ପ୍ରଥମେ ଯେବେ ପ୍ରଥମ ସାଇକେଲ କଲିକତାରୁ ଆସିଲା ଟ୍ରେନରେ ବାଦାମପାହାଡ଼ ଆସି ସେଠାରୁ ଶଗଡ଼ରେ ବୁହା ହୋଇ କରଞ୍ଜିଆ । ଘରେ ଆମେ ବଡ଼ଭାଇମାନେ କେହି ନ ଥିଲୁ । ସବା ସାନ



Digitized by srujanika@gmail.com

ଶୈଳେଶ୍ (ଡାକ ନାମ ନିନି ।) ସାଇକେଲକୁ ଦାଣ୍ଡରେ ବଉଳ ଗଛ ମୂଳେ ରଖିଦିଆ ଯାଇଥାଏ । ଗାଁରୁ ମଫସଲରୁ ଦେଖଣାହାରି ଛୁଟିଥାନ୍ତି । ନିନି ସେଠି ବସି ପେଡ଼ାଲଟା ବୁଲାଇ ଚକକୁ ଘୂରାଇ ସବ୍‌ଜାନତା ପରି ବାବୁଗିରି କରୁଥାଏ । ଏମିତି ବୁଲାଉ ବୁଲାଉ ଚେନ୍ ଆଉ କ୍ରାଙ୍କ୍ ଦାନ୍ତି ଭିତରେ ଆଙ୍ଗୁଳି ରହିଗଲା । ଚେନ୍ ଢିଲା ଥିଲା । ତେଣୁ କଷ୍ଟ ବେଶୀ ନାହିଁ । ତେବେ ଆଙ୍ଗୁଳି ଲାଖିଗଲା, ବାହାରିବ କିପରି । କାହାକୁ ବୁଦ୍ଧି ଯୁଟୁ ନାହିଁ ଯେ ପେଡ଼ାଲଟା ପୂରା ବୁଲାଇ ଦେଲେ କ୍ରାଙ୍କ୍ ଆରମୁଣ୍ଡରେ ବାହାରି ଆସିବ । କାନ୍ଦ ବୋବାଳି ପଡ଼ିଲା । ଶେଷରେ ମିଟୁ ବିନ୍ଧାଣୀ ଆସି ଲୁହା ଖଣ୍ଡ ଉପରେ ରଖି ଛେଣି ହାତୁଡ଼ିରେ ଚେନ୍‌ଟାକୁ କାଟିଦେଲା ।

କରଞ୍ଜିଆରୁ ସ୍କୁଲି ବାରମାଇଲ, ମୋତେ ପ୍ରାୟ ଅଧଘଣ୍ଟା ସମୟ ଲାଗେ । ଏହିପରି ଥରେ ମୁଁ ସ୍କୁଲିରୁ ଫେରୁଥାଏ । ପିନ୍ଧିଥାଏ ଗୋଟିଏ ସ୍କାଉଟ୍ ଡ୍ରେସ୍, ବାଟରେ ବର୍ଷାହେଲା, ଚକରେ ଚିକିଟା ମାଟି ଲାଗିଗଲା, ଚକ ଗଡୁ ନାହିଁ । ଖଣ୍ଡେ ବାଟରେ ଖଣ୍ଡିଏ କାଠିରେ ସେ ସବୁ ସଫା କରେ । ସାଇକେଲରେ ବସି କିଛି ବାଟ ଆସିବା ପରେ ପୁଣି କାଦୁଅରେ ଚକ ଜାମ୍ ହୋଇଯିବାରୁ ସାଇକେଲଟିକୁ କାନ୍ଧରେ ଧରି ଚାଲି ଚାଲି ଆସିଲି । ସେଦିନ କରଞ୍ଜିଆ ଡାକବଙ୍ଗଳା ସାମ୍ନା ରାସ୍ତାରେ ଦେଓ୍ୱାନ୍ ସାହେବଙ୍କୁ ଗୋଟାଏ Scout Salute ଦେଲି । ସେ ଭାଇଙ୍କୁ ମୋ କଥା ପଚାରିଲେ । ମୁଁ ତାଙ୍କର ଗୋଟେ ଭାଇ ଶୁଣି ଏମିତି ପିଲାକୁ ଘରେ ବସାଇ ରଖିଛ କାହିଁକି । ଏହାକୁ ବାରିପଦା ନେଇ ଆସ, ମୁଁ Police Trainingରେ ପଠାଇଦେବି । ଦେଓ୍ୱାନ୍ ସାହେବ କରଞ୍ଜିଆରୁ ଗଲାପରେ ଭାଇ ମୋତେ ନେଇ ବାରିପଦା ବାହାରିଲେ ।

କରଞ୍ଜିଆରୁ ସେ ସମୟରେ ବାହାରକୁ ଯିବାକୁ ହେଲେ ସମସ୍ତେ ଶଗଡ଼ରେ ହିଁ ଯାଉଥିଲେ । ଆମେ ସାଇକେଲ ଆସିବା ପୂର୍ବରୁ ଘୋଡ଼ାଗାଡ଼ିରେ ଯିବା ଆସିବା କରୁଥିଲୁ । ଏପାଖରେ ବାଦାମପାହାଡ଼ ସେପାଖରେ ବାଙ୍ଗିରିପୋଷିରେ ଟ୍ରେନ୍ ଧରି ଯିବାଆସିବା କରୁ । ସାଙ୍ଗରେ ସ୍ତ୍ରୀ ଲୋକ ଥିଲେ ଶଗଡ଼ ନ ହେଲେ ଆମପାଇଁ କରଞ୍ଜିଆରୁ ଘୋଡ଼ା ଆସିଥାଏ । ଗୋଟେ ମଜା କଥା ମନେ ପଡ଼ିଗଲା । ଭାଇ ବେଲଦା କଲିକତାରୁ ମୁଁ କଟକ/ଭଦ୍ରଖରୁ ଘରକୁ ଯିବୁ । ଖଡ଼ଗପୁରରେ ଦେଖାହେବାର କଥା ଥାଏ । ସେଇଠୁ ଟାଟା ଓ ଟାଟାରୁ ବାଦାମପାହାଡ଼ ଯାଇ ବାଦାମପାହାଡ଼ରୁ ଘୋଡ଼ାର ବ୍ୟବସ୍ଥା କରିଥାନ୍ତି । ଗ୍ରୀଷ୍ମଛୁଟି । ଆମେ ଦି'ଭାଇ ଟ୍ରେନ୍‌ରୁ ଓହ୍ଲାଇ ଘୋଡ଼ା ଦି'ଟା ଧରିଲୁ, ମୂଲିଆ ଭାରରେ ଜିନିଷ ପତ୍ର ନେଇ ଚାଲିଲେ । ସେତେବେଳେ ମୟୂରଭଞ୍ଜ ରାଜାଙ୍କ ଆଦେଶ ଅନୁସାରେ ପ୍ରଥା ହେଲା ସରକାରଙ୍କ ଫରେଷ୍ଟ ଡିପାର୍ଟମେଣ୍ଟ ପଥିକ/ଅତିଥି ଚର୍ଚ୍ଚା କରିବ । ହିଂସ୍ର ଜନ୍ତୁ ବହୁଳ ଅଞ୍ଚଳ । କୌଣସି ବିଦେଶୀ/ବାଟୋଇ ପଥ ହୁଡ଼ିଗଲେ ବା ଯାଉ ଯାଉ ରାତିହେଲେ ଜଙ୍ଗଲ ବିଭାଗ ତାଙ୍କୁ ଆଶ୍ରୟ ଦେବାକୁ ବାଧ । ଖାଇବା ପିଇବା ବ୍ୟବସ୍ଥାପାଇଁ



Digitized by srujanika@gmail.com

ପଇସା ନିଆଯାଇ ପାରେ, କିନ୍ତୁ ଗାର୍ଡ଼ ବିଟ୍ ଘରେ ବ୍ୟବସ୍ଥା ଜଙ୍ଗଲବିଭାଗକୁ କରିବାକୁ ଆଦେଶ ଥାଏ। ଆମ କଥା ଅଲଗା, କାରଣ ଆମ ଭାଇ ଜଙ୍ଗଲ ବିଭାଗର ରେଞ୍ଜ ଅଫିସର। ଆମେ ଦି'ଭାଇ ଯାଇ ଯଶିପୁର ଫରେଷ୍ଟ ବଙ୍ଗଳାରେ ଖାଇଲୁ। ଭାଇଙ୍କର କିଛି କାମ ଥିଲା, ସେ ସେଦିନ ରହି ପରଦିନ ଯିବେବୋଲି ଠିକ୍ କଲେ। ମୁଁ ବାହାରିଲି ଏକା। ଶୀଘ୍ର ଶୀଘ୍ର ଭାଇ ମୋତେ ବିଦାୟ ଦେଲେ। ଡେରି ନ କରି ଅନ୍ଧାର ହେବା ପୂର୍ବରୁ କରଞ୍ଜିଆ ପହଞ୍ଚିଯିବାକୁ ଆଦେଶ କଲେ। ମହାଫୁର୍ତ୍ତିରେ ଜଙ୍ଗଲ ଶୋଭା ଦେଖି ଦେଖି ଘୋଡ଼ା ଉପରେ ଚାଲିଛି। ଖରାବେଳଟା, ହେଲେ ରାସ୍ତା ଉପରେ ଖରା ଟୋପେ ଦେଖିବାକୁ ମିଳୁ ନାହିଁ। ଦୁଇପଟେ ଏତେ ବଡ଼ ବଡ଼ ଗଛ କୁଞ୍ଜପରି ଢାଙ୍କି ରଖିଚି ରାସ୍ତାକୁ। ଏପ୍ରିଲ ମାସ ଖରାଦିନ ହୋଇଗଲାଣି, ହେଲେ ବି ଶୀତ ଶୀତୁଆ ଲାଗୁଚି। ଏମିତି ଅଳସୁଆ ଚାଲିରେ ଯାଉ ଯାଉ ଡାଟ ପହଞ୍ଚିଲା ବେଳକୁ କେମିତି ଅନ୍ଧାର ଅନ୍ଧାର ଲାଗିଲାଣି। ସାମାନ୍ୟ ଡର ଲାଗିଲା। ବାଘ ରାସ୍ତା ଉପରୁ ମଣିଷକୁ ଉଠାଇନେବା ଖବର ତ ପ୍ରାୟ ଆସେ। ଡାଟରୁ କରଞ୍ଜିଆ ପାଞ୍ଚମାଇଲ। ଘନ ଜଙ୍ଗଲ-ସେଥିରେ ଦି'ଟା ନାଳ ପାରି ହେବାକୁ ହେବ। ଏଇ ନାଳ ଗୁଡ଼ାକ ଅସୁବିଧା ଜାଗା। ଏଇଠି ବାଘ ପାଣି ପିଇବାକୁ ଆସେ। ଅନ୍ୟ ଜନ୍ତୁକୁ ଆକ୍ରମଣ କରେ। ମୋତେ ସତରେ ଡର ଲାଗୁଥାଏ। ଘୋଡ଼ାର ସାହସରେ ଚାଲିଚି। ଆଗରେ...ନାଳ...ଘୋଡ଼ା ତଳକୁ ଓହ୍ଲାଇ ଓହ୍ଲାଇ ଯାଉ ଯାଉ ହଠାତ୍ ରହିଗଲା। କାନ ଠିଆକରି ମୁଣ୍ଡକୁ ଟେକି ଖାଲି ଫଁ ଫଁ କରୁଥାଏ। ମୁଁ ଚାରିଆଡ଼କୁ ଚାହିଁଲି। କେମିତି ଜଙ୍ଗଲଟା ପୂରା ନୀରବ ହୋଇ ଯାଇଥାଏ। ଚଢ଼େଇ ଶବ୍ଦ ନାହିଁ କି ମାଙ୍କଡ଼/ପଶୁ କାହାରି ଶବ୍ଦ ନାହିଁ। ସାଧାରଣ ଜଙ୍ଗଲରେ ନୀରବରେ ସ୍ଥିର ହୋଇ ଅପେକ୍ଷା କଲେ ପଶୁପକ୍ଷୀଙ୍କ ଶବ୍ଦ ଶୁଣାଯାଏ। ଦେଖା ବି ଦିଅନ୍ତି। କିନ୍ତୁ ଏପରି ନୀରବତାର ଲକ୍ଷଣ କେବଳ ଗୋଟାଏ ଅବସ୍ଥାରେ ସମ୍ଭବ। ପାଖରେ କେଉଁଠି ବାଘ ଅଛି। ରଜା ବାହାରିଥିବା ସମୟରେ ସବୁ ପ୍ରଜା ଥର ହର। ମୋ ଘୋଡ଼ା ଅବସ୍ଥା ବି ସେଇଆ।

ମୁଁ ଧୀରେ ଧୀରେ ନର୍ଭସ ଅନୁଭବ କଲି। କଣ କରିବି ଘୋଡ଼ାକୁ ଯେତେ ଗୋଇଠା ମାରିଲେ ବି ଉଣ୍ଡୁ ନାହିଁ। ପକେଟରେ ବିଭିନ୍ନ ପ୍ରକାରର ସ୍କାଉଟ ହୁଇସିଲ ଫୁଟବଲ ଖେଳପାଇଁ ରେଫରୀ ହୁଇସିଲ ଥିଲା। ସେଥିରୁ ୪ଟା ବାହାର କରି ମୁହଁରେ ସଜାଡ଼ି ଧରି ମାରିଲି ଗୋଟେ ଲମ୍ବା ଫୁଙ୍କା, ଘୋଡ଼ା ଚମକି ପଡ଼ିଲା। ତା' ସାଙ୍ଗକୁ ଜଙ୍ଗଲରୁ ଘାଁଉଁ ଗର୍ଜନଟାଏ ବି ଶୁଣାଗଲା। ଘୋଡ଼ା ହଠାତ୍ ଧାଇଁବା ଆରମ୍ଭ କଲା ଯେ ପାଣି କାଦୁଅ ନ ମାନି ସିଧା ଆସି ଆମ ଘର ଦୁଆର ମୁହଁରେ ଗଡ଼ି ପଡ଼ିଲା। ମୁଁ ବି ଝାଳ ନାଳହୋଇ ଉଠି ବସିଲି। ମା ଓ ଅନ୍ୟ ଗୁରୁଜନମାନଙ୍କଠାରୁ ରାତିରେ ଆସିବାରୁ ଗୁଡ଼ାଏ ଗାଳି ଶୁଣିଲି।



Digitized by srujanika@gmail.com

ଦି'ଢଣ ଦି'ଟା ସାଇକେଲରେ ବାରିପଦା ବାହାରିଥିଲୁ । ବର୍ଷାଦିନ, ବାଟରେ ଯେଉଁଠି କାହାରି ସହିତ ଦେଖାହୁଏ, ସେଇଠି ଆମର ଯିବାର କାରଣ ପଚାରିଲେ, ଭାଇ କହୁଥିଲେ, ସେ ଚାକିରି କରିବାପାଇଁ ଯାଉଛି । ଭଦ୍ରଲୋକମାନେ କହନ୍ତି, ନିଜ ଘରେ ଏ ମୁଲକଟାକୁ ଚାକର ରଖିବାର ଯାହାର କ୍ଷମତା, ସେ ପୁଣି ଚାକିରି କରିବ ! ଏହିପରି ନାନାଦି କଥା ଶୁଣି ଶୁଣି ଦୁଇଦିନରେ ଯାଇ ବାରିପଦାରେ ପହଞ୍ଚିଲୁ । ଆମର ସେଇ ଦୁର୍ଗାଭାଇଙ୍କ ବସାରେ । ସେ ସେତେବେଳେ ବାରିପଦାସ୍ଥ ବାଲେଶ୍ୱର ରୋଡ଼ Pass officeରେ ଥାଆନ୍ତି । ଆମ ଯିବା କାରଣ ଶୁଣିଲେ ଓ ଭାଇଙ୍କ ସହିତ କଥାବାର୍ତ୍ତା ହୋଇ ମୋତେ ଚାକିରି କଥା ଭୁଲିଯିବାକୁ କହିଲେ ଓ ସକାଳୁ ଭଦ୍ରଖ ସାହାପୁର ଯିବାପାଇଁ କହିଲେ । ସେତେବେଳକୁ ଆମ ବାବାଙ୍କର ଭାଇମାନଙ୍କର ଭାଗ ବଣ୍ଟରା ହୋଇଯାଇଥାଏ । ଏଣୁ ଭଦ୍ରଖରେ ଆମ ଭାଗ ତତ୍ତ୍ୱାବଧାନପାଇଁ ମୋର ସେଠାକୁ ଯିବା ନିତାନ୍ତ ପ୍ରୟୋଜନ । ଚାକିରିଠାରୁ ତାହା ଅଧିକ ମୂଲ୍ୟବାନ୍ । ମୋର ସେଠାରେ ଚଳିବାପାଇଁ ଅନେକ କିଛି କରି ଦିଆଯିବ ବୋଲି ଲୋଭ ଦେଖାଇଲେ । ଭାଇ ସେଠାରେ ମୋତେ ଛାଡ଼ି ଫେରିଲେ; ମୁଁ ଦୁର୍ଗାଭାଇ ପାଖରେ ରହିଥାଏ ।

ମୟୂରଭଞ୍ଜର ଏସ୍. ପି. ଥାଆନ୍ତି ବୈଷ୍ଣବ ଚରଣ ଦାସ । ଆମ ପରିବାର ସହ ବିଶେଷ ପରିଚୟ ଥାଏ । ଥରେ ତାଙ୍କ ସହ ଦୁର୍ଗାଭାଇ ଓ ମୁଁ ଶିକାର ଯିବାର ସୁଯୋଗ ପାଇଲୁ । ଜଙ୍ଗଲ କେମ୍ପରେ ତାଙ୍କ ସଙ୍ଗେ ବୁଲି ବୁଲି ମୁଁ ତାଙ୍କର ଚାମଚା ହୋଇଗଲି । ତାଙ୍କ ସାଙ୍ଗରେ ଖାଇଲି ବସିଲି । ସକାଳ ଜଳଖିଆ ବାରଟା ଖଣ୍ଡେ ମୋଗଲାଇ ପରଟା ଆଉ ମାଂସ କଷା ସିଏ ବି ଦୁଇସେର ଖଣ୍ଡେ । ମୁଁ ବି ସେମିତି ଖାଇବା ପ୍ରିୟ ବୋଲି ତାଙ୍କର ମୋତେ ଭାରି ପସନ୍ଦ । କହିଲେ ତୋତେ ପରା ପୋଲିସ ଚାକିରିରେ ଜଏନ କରିବାକୁ କୁହାଯାଇଚି । ଶୀଘ୍ର ଜଏନ କର, ଟ୍ରେନିଂ ପଠାଇ ଦେବି । ଦୁର୍ଗାଭାଇଙ୍କୁ ଯେତେ କହିଲେ ସେ ରାଜି ହେଲେ ନାହିଁ । ଭାଇ ମନା କରି ଯାଇଚି । ଆମେ ରାଜା ଘର ଗେଷ୍ଟ ହୋଇ ଆସି ତାଙ୍କଠାରେ ଚାକିରି କରିବା ? ମୁଁ ବାଧ ହୋଇ ଭଦ୍ରଖ ଗଲି । ପୁଣି ସେହି ଭଦ୍ରଖ । ମୋର ଭଦ୍ରଖରେ ଛାତ୍ର ଜୀବନ ପରେ ଯୁବକ ଜୀବନ ଆରମ୍ଭ ହେଲା ।

ଭଦ୍ରଖରେ ଖେଳ କସରତ୍ ଇତ୍ୟାଦିରେ ସମୟ କଟୁଥାଏ । ବିଶେଷତଃ ଫୁଟବଲ । ମୁଁ ଖୁବ୍ ଭଲ ଖେଳୁଥାଏ । ରେଲୱେ ଫୁଟବଲ୍ ଟିମ୍‌ରେ ମୋତେ ଖେଳାଇବାପାଇଁ ଚାକିରିଆ ହିସାବରେ କାଗଜ ପତ୍ରରେ ମୋ ନାମ ଚଢ଼ାଇ ମୋତେ ଖେଳିବାକୁ ନିଅନ୍ତି ଖଡ଼ଗପୁର, ଖୋର୍ଦ୍ଧାରୋଡ଼, ୱାଲଟିୟର ଇତ୍ୟାଦି । ଏଇ ସୂତ୍ରରୁ ମୋତେ Railway Officer ଥରେ Railway ରେ ଚାକିରି କରିବାପାଇଁ କହିଲେ । ମୋତେ ଥରେ Training ପରେ Ticket Checker ରେ ଭର୍ତ୍ତି କରିଦେବାପାଇଁ କହିଥିଲେ । ମୁଁ ଆସି ଭାଇଙ୍କୁ ପଚାରିବାରୁ ସେ ଚାକିରି



Digitized by srujanika@gmail.com

କରିବାପାଇଁ ମନା କଲେ । ରେଲୱେ ଚାକିରିଟା କୁଆଡ଼େ କୁଲିମାନଙ୍କ ଚାକିରି । ଏଣୁ ମୋର ଚାକିରି କରିବା ନୋହିଲା ।

କିଛି ବର୍ଷପରେ ମୋର ବଡ଼ ଭିଣୋଇ ଶ୍ରୀ ହରେକୃଷ୍ଣ ପଟ୍ଟନାୟକ ସେତେବେଳେ ପାଟଣା Stateରେ ମାଜିଷ୍ଟ୍ରେଟ ଥିଲେ । ସେହି ସମୟରେ ଝାରସୁଗୁଡ଼ା ପାଖରେ ରେଲୱେ ଲାଇନ୍ ତିଆରି ହେଉଥିଲା । ସେ ମୋତେ ଡକାଇଥିଲେ Railway Contractoryପାଇଁ । ତାଙ୍କରି ମୂଳଧନରେ ଭଲ ନ ହେଲେ ପାଟଣା ଷ୍ଟେଟରେ ଚାକିରିରେ ଭର୍ତ୍ତି କରିଦେଇ ଆସିବେ ବୋଲି କହିଥିଲେ । କିନ୍ତୁ ତା'ବି ମୋତେ କରିବାକୁ ଭାଇ ଦେଇ ନ ଥିଲେ । ଭଦ୍ରଖରେ ଜମିଜମା ରୋଜଗାର ଛାଡ଼ି ପର ଚାକିରିକୁ କାହିଁକି ଯିବୁ ବୋଲି କହି ସବୁ ରାସ୍ତା ବନ୍ଦ କରିଦେଇଥିଲେ ।

ମୋର ଭଦ୍ରଖରେ ଉପସ୍ଥିତି ସମସ୍ତଙ୍କୁ ଆନନ୍ଦ ଦେଲା । ମୁଁ ଯାଇ ଗାଁରେ ସାହାପୁରରେ ରହିଲି । ସେ ସମୟରେ ଗାଁରେ ଆଉ ସେ ଆଗ ଅବସ୍ଥା ନ ଥିଲା । ଗାଁରୁ କେତେକ ମୁରବି ମରିଗଲେଣି । କେତେକ ଯୁବକ ପଢ଼ିବାପାଇଁ ବାହାରକୁ ଚାଲି ଯାଇଥାନ୍ତି । ଗାଁରେ ଠାକୁରଙ୍କ ଝୁଲଣ ଯାତ୍ରା ବନ୍ଦ ହୋଇଯାଇଥାଏ । ଗାଁର ବଙ୍ଗଳା ଘର (ଗାଁ ମଝିରେ ଇଙ୍ଗମାଇଲ ହଲ ଘର) ମରାମତି ଅଭାବରୁ ଜୀର୍ଣ୍ଣାବସ୍ଥା । ଗାଁରେ ଠିକ୍ ଏହି ସମୟରେ ମୁଁ ପହଞ୍ଚିଲି । ଆମ ଟୋକାଙ୍କ ମଧ୍ୟରେ ଗୋଟାଏ ଚହଳ ସୃଷ୍ଟି ହେଲା । ଆମ ଗାଁରେ ସାଧୁ ଚରଣ ଦାସ ବୋଲି ଜଣେ ସ୍ୱଜାତୀୟ ସମ୍ପର୍କୀୟ କଚେରି ପାଖ ବଙ୍କସାହିରୁ ଉଠିଆସି ଆମ ଗାଁରେ ଥାଆନ୍ତି । ତାଙ୍କର ତିନି ପୁଅ । ବଡ଼ ପୁଅ ଗୋବିନ୍ଦ ଚନ୍ଦ୍ର ଦାସ ମୋଠାରୁ senior, ଜଣେ ଖୁବ୍ ଭଲ ଫୁଟବଲ ଖେଳାଳି । ବେକ୍ ପୋଜିସନ୍‌ରେ ଖେଳନ୍ତି । ତାଙ୍କ ତଳେ ଗୋପାଳ, ସେ ମୋର ଭାରି ସାଙ୍ଗ, ଆମେ ପରସ୍ପରକୁ 'ସ' ବୋଲି ଡକାଡକି ହେଉ । ଉଭୟ ମିଶି ସାଳନ୍ଦୀ ନଦୀ ପାର ହୋଇ ପ୍ରତିଦିନ ଫୁଟବଲ ଖେଳିବାକୁ ଯାଉ । ଆସିଲାବେଳକୁ ଅନ୍ଧାର ହୋଇଯାଏ । ଯେଉଁଦିନ ଆମ ପଟରେ ଡଙ୍ଗା ଥାଏ ସେଦିନ ଡଙ୍ଗାରେ ଆସୁ; ନଚେତ୍ ନଈରେ ପଶି ପାରି ହେଉ । ଜଙ୍ଘଠାରୁ ଅଧିକ ପାଣି ହେଲେ ଲୁଗା ଖୋଲି ହାତରେ ଧରି ପହଁରି ପହଁରି ଚାଲି ଆସୁ । ଏ ପାଖରେ ପହଞ୍ଚି ଲୁଗାପିନ୍ଧି ଚାଲିଆସୁ ।

ଫୁଟ୍‌ବଲ ଖେଳ ମୋର ବଡ଼ ନିଶା । ଆରମ୍ଭ ହୋଇଥିଲା ବାରିପଦାରେ, ଆମେ ବାରିପଦାରେ Fraser Hostelରେ ଥିବା ସମୟରେ ହଷ୍ଟେଲକୁ ଲାଗି ଖେଳ ପଡ଼ିଆ । ଏଣୁ ସ୍କୁଲ୍‌ରୁ ଆସି ନିତ୍ୟକର୍ମ ସାରି ପଡ଼ିଆରେ ଯାଇ ନିୟମିତ ଖେଳୁ । ବାରିପଦାରେ ସେ ସମୟରେ ଶ୍ରୀ ବଜ୍ରସୁନ୍ଦର ଦାସ ଉପର ଶ୍ରେଣୀର ଛାତ୍ର, ଖୁବ୍ ବଡ଼ ଖେଳୁଆଡ଼, ନାମଡାକ ଖାଲି ଓଡ଼ିଶା ନୁହେଁ କଲିକତାରେ ମଧ୍ୟ । ଶ୍ରୀ ସୀତାନାଥ ମାଇତି ସେ ସମୟରେ ବାରିପଦାର ସିନିୟର ଟିମ୍‌ର ଗୋଲକିପର୍ । ସେ ପଠପଢ଼ା ପରେ ତହସିଲଦାର ହୋଇଥିଲେ ଓ କରଞ୍ଜିଆରେ ମଧ୍ୟ ରହୁଥିଲେ ।



Digitized by srujanika@gmail.com

କରଞ୍ଜିଆ ଆସିବା ପୂର୍ବରୁ ସେ ଛୋଟା ହୋଇ ଯାଇଥିଲେ। ସେ ପଢ଼ିଆକୁ ଆସିବା ପୂର୍ବରୁ ମୁଁ ଯାଇ ଠିଆ ହୁଏ ଗୋଲ ପୋଷ୍ଟରେ। ଦିନେ ସେହି ବ୍ରଜବାବୁ ଗୋଟିଏ ତୀବ୍ର ସଟ୍ ଟିକିଏ ପାଖରୁ ମାରିଦେବାରୁ ମୁଁ ଧରିନେଲି ପେଟ ଉପରେ। କିନ୍ତୁ ସେଇଠି ଗଡ଼ି ପଡ଼ିଲି। ପେଟରେ ଖୁବ୍ କଷ୍ଟ ହେଲା। ମୋତେ ଆସି ସମସ୍ତେ ଉଠାଇଦେଲେ। ବ୍ରଜବାବୁ କହିଲେ ''ଏମିତି ଧରିବ ନାହିଁ। ପ୍ରାଣ ଛାଡ଼ିଯିବ।'' ସେହିଦିନୁ ସେ ମୋତେ ଗୋଲ୍ କିପର୍ ଖେଳାଇଲେ। ମୋର ଖେଳ ଆରମ୍ଭ ହେଲା ଗୋଲ୍‌କିପର୍ ଠାରୁ। କିନ୍ତୁ ଭଦ୍ରଖରେ ମୁଁ ଖେଳିଥିଲି ରାଇଟ୍ ହାଫ୍ ପୋଜିସନରେ। ଟାଉନ ସ୍କୁଲ ମିଶି ଗୋଟାଏ ଟିମ୍ ହୋଇଥାଏ। ସେ ଟିମ୍‌ରେ ଇବ୍ରାହିମ ବୋଲି ଗୋଟିଏ ଛ'ଫୁଟିଆ ପିଲା ଗୋଲ୍‌କିପର୍, ଗୋବିନ୍ଦ ଦତ୍ତ ଓ ତଫଜିଲ ମିଆଁ ବେକ୍ ଖେଳୁଥିଲେ। ଏହି ତଫଜିଲ ମିଆଁ ଗୋଟାଏ ଦେଖିବା ଜିନିଷ। ବେଶ୍ ଲମ୍ବା ଚଉଡ଼ା। ଛାତିଟା ହାତେ ଓସାର, କୁଞ୍ଚୁକୁଞ୍ଚିଆ ବାଳ, ସୁଶ୍ରୀ ଚେହେରା। କିନ୍ତୁ ଗୋଟାଏ ବାଘ। ଖେଳରେ ସେ ଆଗେଇ ଗଲେ ହୁଏତ ବଲ ନଚେତ୍ ଖେଳାଳି ଯିଏ ହେଉ ସେ ସଟ୍‌ରେ ଉଡ଼ିବେ। ପୋଜିସନ୍ ଜ୍ଞାନ ଖୁବ୍ ବେଶୀ। କିନ୍ତୁ ମୁଭମେଣ୍ଟ swift ନୁହେଁ, ଏଣୁ ସମୟ ସମୟରେ ସେ ଠକି ଯାଏ। କେତେ ପ୍ରକାର ମାଡ଼ ଦିଆହୁଏ ଓ କେତେପ୍ରକାର ମାଡ଼ରୁ ନିଜକୁ କେମିତି ବଞ୍ଚାଇହୁଏ ଏସବୁଥିରେ ସେ ମାଷ୍ଟର। ଥରେ ଟାଉନ୍ ଓ ରେଲୱେ ମିଶି ଖୋର୍ଦ୍ଧା ରୋଡ଼ European team ବିରୁଦ୍ଧରେ ଖେଳିବାକୁ ଯାଇଥାଉ। ସେ ସମୟରେ ଖୋର୍ଦ୍ଧା Railway fieldଟା ଗୋଡ଼ିରେ ଭର୍ତ୍ତିଥିଲା। ମୁଁ ରାଇଟ୍ ହାଫ, ତଫଜିଲ ରାଇଟ୍ ବେକ୍, ବିରୋଧୀ ଦଳର ଲେଫ୍ଟଇନ୍ ଗୋଟିଏ ଟୋକା। ଖେଳ ଚାଲିଥାଏ। ଗୋଟାଏ ବଲ ଉପରୁ ଖସୁଥାଏ, ମୁଁ ହେଡ୍ କରିବାପାଇଁ ପ୍ରସ୍ତୁତ ଥାଏ। ହଠାତ୍ ସେ ରାଇଟ୍-ଇନ୍ ଟୋକା ଆସି ଗୋଟାଏ ଡିଆଁମାରି ମୋ ଛାତି ଉପରେ ବୁଟ ରଖି ବଲ୍‌ଟି ହେଡ଼ କରିନେଇଗଲା। ଏହାଦେଖି ତଫଜିଲ କହିଲା ''ଛାତି ଉପରେ ବୁଟ୍ ମାଡ଼ ଖାଇଲୁ କିଛି କରି ପାରିଲୁ ନାହିଁ। ତୋତେ ଗୋଟାଏ ଉପାୟ କହିଦେଉଛି। ପୁଣି ଯଦି ସେ ଏମିତି ଡେଇଁବ ତେବେ ତୋ ହାତଟା ତାର ଗୋଇଠି ତଳେ ରଖିଦେବୁ, ଦେଖିବୁ କ'ଣ ହେବ।'' ପ୍ରାୟ ୧୦ମିନିଟ୍ ମଧ୍ୟରେ ସେ ଚାନ୍‌ସ ଆସିଲା। ସେ ଟୋକାଟା ଯେମିତି ମୋ ଉପରକୁ ଡେଇଁଚି ମୁଁ ମୋର ହାତଟି ଠିକ୍ ଆଶାବାଡ଼ିପରି କରି ତାର ଗୋଇଠି ପାଖରେ ରଖିଦେଲି, ବାସ୍। ସେ ଟୋକାର ଗୋଡ଼ ଉପରକୁ ରହିଗଲା ମୁହଁ ଆସି କରି ତଳେ ପିଟି ହୋଇଗଲା। ରକ୍ତାକ୍ତ....। ଏହିପରି ନାନା ପ୍ରକାର ମାଡ଼ର ପ୍ରଣାଳୀ ତଫଜିଲକୁ ମାଲୁମ୍ ଥିଲା।

ଫୁଟବଲ ଖେଳ ଗୋଟାଏ ଭୟଙ୍କର ନିଶା। ଆମ ଗାଁରୁ ଟାଉନ୍‌କୁ ଗଲାବେଳେ ଡଙ୍ଗାରେ ଯାଉ, ଆସିଲାବେଳେ ଲୁଗାଖୋଲି ନଈରେ ପହଁରି ବା ପାଣି କମ୍ ଥିଲେ ଚାଲି ଆସିବାକୁ ପଡ଼େ। ଭଦ୍ରଖ ଟାଉନ୍‌ରେ ତତ୍‌ସମୟରେ ଓଡ଼ିଶା ଷ୍ଟେଟ୍ ପ୍ଲେୟାରଙ୍କ ମଧ୍ୟରେ ଶ୍ରୀ ରସିଦ୍ ମିଆଁ ଜଣେ।



Digitized by srujanika@gmail.com

ସେ ଲେଫ୍ଟ୍ ଆଉଟ୍ ଖେଳନ୍ତି । ପତଳା ଲୋକ । ତାଙ୍କର ଖେଳ ସମୟରେ କାହାରି ସହିତ ଦେହ ଲାଗେ ନାହିଁ ଫାଉଲ ତାଙ୍କର ନାହିଁ । ତତ୍‌ସମୟରେ ବାରିପଦାର ବିଶ୍ୱେଶ୍ୱର ବାବୁ ଓ ରସିଦ ମିଆଁଙ୍କର ହେଡ୍‌କରି ବଲ୍ ଗୋଲ କରିବା ଗୋଟାଏ ଦେଖିବାର ଜିନିଷ । କର୍ଣ୍ଣର ସଟ୍ ହେଲେ ବଲ୍ ଯଦି ଗୋଲ ଏରିଆରେ ପଡ଼େ ତେବେ ଏ ଦୁହିଁଙ୍କର ହେଡ୍‌କୁ ନ ଲଗିଲେ ବଲ୍ ନିଶ୍ଚୟ ଗୋଲ ପୋଷ୍ଟକୁ ଯିବ । ତତ୍‌ସମୟରେ ଭଦ୍ରଖ ଗୋଟାଏ ଭଲ ଟିମ୍ ଥିଲା । ରେଲୱେ ଟାଉନ୍ ମିଶି ସମୟ ସମୟରେ ବାହାର ଟିମ୍‌କୁ ଡକାଇ ଖେଳ ହୁଏ । ସେ ସମୟରେ ଶ୍ରୀ ଶଚି ମିଶ୍ର ବୋଲି ଜଣେ ଭଦ୍ରଲୋକ ଭଦ୍ରଖକୁ Settlement Officer ହୋଇ ଆସିଥା'ନ୍ତି । ତାଙ୍କର ଫୁଟବଲ୍ ଖେଳ ସଉକ୍ ଥିଲା । ସେ ଭଦ୍ରଖ ଟିମ୍‌କୁ ଭଲ ଭାବେ ଅର୍ଗାନାଇଜ୍ କରିଥିଲେ । ତାଙ୍କରି ସମୟରେ ରେଭେନ୍ସା କଲେଜକୁ ଥରେ ଡକାଇ ଭଦ୍ରଖ ରେଲୱେ ପଡ଼ିଆରେ ଖେଳ ହୋଇଥିଲା । ସେ ସମୟରେ କଲେଜ ତରଫରୁ ବ୍ରହ୍ମାନନ୍ଦ ବାବୁ ବୋଲି ଜଣେ ବେକ୍ ଖେଳୁଥିଲେ । ତାଙ୍କର ସଟ୍ ଗୋଟିଏ ଦେଖିବାର ଜିନିଷ । ଏପାଖ ବେକ୍ ଏରିଆରୁ ସେପାଖ ଗୋଲ ପାଖରେ ବଲ ପଡ଼େ । ଶ୍ରୀକୃଷ୍ଣ ମହାପାତ୍ରଙ୍କ ସାନ ପୁଅ ଫେଲୁ ମଧ ଫରୱାର୍ଡ ଲାଇନ୍‌ରେ ଖେଳୁଥିଲା । କଲେଜର ସେ ଖୁବ୍ ନାମଜାଦା ପିଲା । ତଥାପି ଖେଳ ଆମେ ଡ୍ର ରଖିଲୁ । କାରଣ ଆମର ଡିଫେନ୍ସ ଖୁବ୍ ଭଲ ଥିଲା । ବାଲେଶ୍ୱରରେ ଥରେ ଆମ ଟିମ ବାରିପଦା ଟିମ ସହ ଖେଳିବାର ସୁଯୋଗ ମିଳିଥିଲା । ବାରିପଦା ଟିମରେ ବ୍ରଜ ବାବୁ, ବିଶ୍ୱେଶ୍ୱର ବାବୁ, ସତୀଶ ଦାସ, ଶିଶିର ଦାସ ପ୍ରଭୃତି ଖେଳୁଥିଲେ । ମୁଁ ସେ ଖେଳ ଭୁଲି ପାରିବିନି । ମୁଁ ରାଇଟ୍ ହାଫ୍ । ବ୍ରଜ ବାବୁ ଏକା ଆମ ଗୋଲକୁ ୧୮ଟା ସଟ୍ ମାରିଥିଲେ । କିନ୍ତୁ ଆମ ଗୋଲ କିପର୍ (ଭଦ୍ରଖ ଷ୍ଟେସନ ମାଷ୍ଟର) ଜଣେ ଆଙ୍ଗ୍‌ଲୋ ଇଣ୍ଡିଆନ୍, ସେ ସମସ୍ତ ବଲ୍ ଅଟକାଇଥିଲେ । ଆମ ଟିମ୍‌ରେ ଖୋର୍ଦ୍ଧାର 'ରାବଣା' ଓ ରଙ୍ଗାରାଓ ନାମରେ ଦୁଇଜଣ ଖେଳାଳି ଖେଳୁଥିଲେ । ରଙ୍ଗାରାଓର ଡ୍ରିବ୍‌ଲିଙ୍ଗ ଗୋଟିଏ ଦେଖିବା ଜିନିଷ । ଯେ ଯେତେ ଚେଷ୍ଟା କଲେ ମଧ ବଲ୍ ତା' ଗୋଡ଼ ପାଖରୁ ବାହାରକୁ ଯାଏ ନାହିଁ । ଦୋଷ ମଧରେ ତାର ସଟ୍ ଆଦୌ ଭଲ ନାହିଁ । ଗୋଲ ଏରିଆରେ ପାସ୍ ଦେବା ଛଡ଼ା ସେ ଠିକ୍ ସଟ୍ କରିପାରେ ନାହିଁ ।

ସେ 'ରାବଣା' କଥା କହିବି । ଖେଳ ଦିନ ୧୨ଟା ବେଳେ ଗାଡ଼ିରୁ ଓହ୍ଲାଇଲା ସେ । ମୁଣ୍ଡରେ ଠେକେ କୁଞ୍ଚୁକୁଞ୍ଚୁଆ ବାଳ, ତ୍ରିପଣ୍ଡ କଳା, ଖୁବ୍ ଲମ୍ବା । ଆଖି ଦୁଇଟା ଲାଲ । ଖଣ୍ଡିଏ ବେଗ୍, ବୁଟ୍ ହଳକ କାନ୍ଧରେ ପଡ଼ିଥାଏ । ଯାହାହେଉ ଗାଡ଼ିରୁ ଓହ୍ଲାଇ ଆମେ ଯେଉଁଠି ଥାଉ ସେଠାକୁ ନେଇଗଲୁ । ମୁହଁ ହାତ ଧୋଇ ଖାଇବାକୁ ବସିଲା । ମାଂସ ଦେଢ଼ସେର ଖଣ୍ଡେ ଓ ସେଇ ପରିମାଣରେ ଭାତ ଖାଇଦେଇ ବ୍ୟାଗ୍‌ରୁ ଗୋଟାଏ ବୋତଲ କାଢ଼ି ଢକ ଢକ କରି ବୋତଲଟି ଶେଷ କରିଦେଇ ଶୋଇଲା । ଶୋଇବା ପୂର୍ବରୁ କହିଲା ''ତିନିଟା ବାଜିଲେ ଉଠାଇ ଦେବ ।'' ଓଃ ସେ କି ନିଦ,



Digitized by srujanika@gmail.com

ନାକ କି ଭୀଷଣ ରଡ଼ି ଛାଡୁଥାଏ । ଯାହାହେଉ ତିନିଟା ସମୟରେ ଉଠାଇ ଦେବାରୁ ଉଠି ଚା ଖାଇ ନିତ୍ୟକର୍ମ ସାରି, କିଛି ସମୟ ଏକସ୍ଥାନ ଦୌଡ଼, ୨୦-୨୫ଟା ବୈଠକ, ଆଠ/ଦଶଥର ଦଣ୍ଡ ପକାଇବା ପରେ ବସିଗଲା । ଛଅଟା ଅଣ୍ଡାସିଝା, ଦୁଇଟା ହାତୀମାର୍କା ପରଟା ପରେ ପୁଣି ଗୋଟାଏ ବୋତଲ ଖାଇ ବେଶଭୂଷା ହୋଇ ବାବୁ ବାହାରିଲେ ପଡ଼ିଆକୁ । ମୁଁ କେବଳ ସେହି ଭଦ୍ରଲୋକଙ୍କୁ ଦେଖୁଥାଏ । ସେ ଲେଫ୍ଟଇନ୍ ଖେଳୁଥିଲେ । ହାଫ୍ ଟାଇମ୍ ପର୍ଯ୍ୟନ୍ତ ଦେଖିଲୁ । ଯେପରି ସେ ହାଓ୍ୱା ଖାଉଛନ୍ତି । ସେମିତି କେତେବେଳେ କେମିତି ଗୋଟାଏ ଅଧେ ସଟ୍ । ଅବଶ୍ୟ ସଟ୍‌ଗୁଡ଼ା ଦେଖିବାର ଜିନିଷ । କୌଣସି ସଟ୍ ତାଙ୍କର ଅଟ୍ଟାଗାକୁ ଯାଉ ନ ଥାଏ, ସବୁ ଠିକ୍ ଗୋଲ ଏରିଆରେ । ଆମ କ୍ୟାପଟେନ୍ ଶଚି ବାବୁ ଭାରି ବିରକ୍ତ ହେଉଥାନ୍ତି । ହାଫ୍ ଟାଇମ୍‌ରେ ଶଚି ବାବୁ କହିଲେ କାହିଁ ଆପଣ ଆଦୌ ଖେଳୁ ନାହାନ୍ତି । ରଙ୍ଗାରାଓଙ୍କର ପାସ୍ ଗୋଟାଏ ଦୁଇଟା ଧରିନେଲେ ନିଶ୍ଚୟ ଗୋଲ ହୁଅନ୍ତା । ତହୁଁ ସେ ପଚାରିଲା କେତେ ଆପଣଙ୍କର ଦରକାର ? ଶଚିବାବୁ କହିଥିଲେ ଗୋଟାଏ ହେଉ, ତା'ପରେ ଅନ୍ୟ କଥା । ଖେଳ ଆରମ୍ଭ ହେଲା । ବଲ୍‌ଟା ମୁଁ ମାରିଲି ହାଫ୍‌ବେକ୍ ଏରିଆରୁ । ବେଶ୍ ଉଚ୍ଚା, ରାବଣା ସେତେବେଳେ ତାଙ୍କ ବେକ୍ ଏରିଆରେ ଓଲଟା ଆଡ଼କୁ ମୁହଁ କରି ମୋ ବଲ୍‌ଟିକୁ ଉପରୁ ଉପରୁ ଏମିତି କ୍ରସ୍ କଟ କରି ସଟ୍ କଲେ ଯେ ତାହା ବାରିପଦା ଆଡ଼େ ଗୋଲ ହୋଇଗଲା । କି ସୁନ୍ଦର ମେଜରଡ୍ ସଟ୍ । ତା'ପରେ ସେ ଗୋଲ୍‌ଟି ବାରିପଦା ଆଉ ସୁଝାଇ ପାରିଲେ ନାହିଁ । ଭଦ୍ରଖ ସେ ବର୍ଷ କପ୍ ନେଇଥିଲା । କି ଆନନ୍ଦ ।

ଶଚି ବାବୁ ଭଦ୍ରଖରେ ଥିବା ପର୍ଯ୍ୟନ୍ତ ଏହିପରି ବାହାର ଟିମ୍ ସହ ଅନେକ ଖେଳ ଖେଳିଛୁ । ଏହି ଖେଳ ନେଇ ମୁଁ ତାଙ୍କ ବସାକୁ ଯାଏ । ସବୁ ଖେଳାଳିଙ୍କ ମଧ୍ୟରେ ମୋତେ ସେ ବେଶୀ ଆପଣାର କରିଥିଲେ । ମୁଁ ପ୍ରାୟ ପ୍ରତିଦିନ ସକାଳ ହେଉ ବା ସନ୍ଧ୍ୟାହେଉ ତାଙ୍କ ବସାକୁ ଯାଉଥିଲି । ସେ ତାଙ୍କ ସ୍ତ୍ରୀଙ୍କ ସହ ପରିଚୟ କରାଇ ଦେଇଥିଲେ । ମୁଁ ଟିକିଏ ଲାଜକୁଳିଆ ଥିଲି । ଆଜିକାଲି ମଧ୍ୟ ନୂଆଲୋକଙ୍କ ସହ ମୁଁ ହଠାତ୍ କଥାବାର୍ତ୍ତା କରି ପାରେ ନାହିଁ । ତାଙ୍କ ସ୍ତ୍ରୀ ସେହି ସୁବିଧାରେ ମୋତେ ଥଟ୍ଟା କରନ୍ତି । ପ୍ରଥମେ ପ୍ରଥମେ ମୁଁ ତାଙ୍କ ବସାକୁ ଗଲେ, ଅଫିସ୍ ରୁମ୍‌ରେ ଶଚି ବାବୁଙ୍କ ପାଖରେ ଯାଇ ବସେ । ସେ ତାଙ୍କ ସ୍ତ୍ରୀଙ୍କୁ ଡାକନ୍ତି, ଚା ବିସ୍କୁଟ ଖିଆ ହୁଏ । ମୋତେ ଓଭାଲଟିନ୍ ଚାମୁଚରେ ଦିଅନ୍ତି । ତାଙ୍କ ସ୍ତ୍ରୀଙ୍କ ଗୋଟାଏ ଆଶ୍ଚର୍ଯ୍ୟ ଅଭ୍ୟାସ । ସେ ଯେଉଁଠି ବସିଥାନ୍ତି ପାଖରେ ଓଭାଲଟିନ୍ ବୋତଲ ଓ ଚାମୁଚ ଥାଏ । ନିଜେ ମଝିରେ ମଝିରେ ଚାମୁଚାଏ ପାଟିରେ ପକାନ୍ତି ଓ ପାଖରେ ଯିଏ ଥାଏ ତାକୁ ମଧ୍ୟ ଚାମୁଚାଏ ଦିଅନ୍ତି । ମୋତେ ଦେଖିଲେ କହନ୍ତି, ''ଆସିଲ ପ୍ରାଣନାଥ, ଆସ,'' ମୋତେ ଭାରି ଲାଜ ଲାଗେ । ଶଚି ବାବୁ ବସିଥାନ୍ତି, ତାଙ୍କରି ଆଗରେ ଏମିତି କହନ୍ତି । ପାଖ ଚେୟାରରେ ବସାନ୍ତି । ଚାମୁଚାରେ ଓଭାଲଟିନ୍ ବାହାରକରି ମୋ ପାଟିରେ ଢାଳି ଦିଅନ୍ତି । ଶଚି



Digitized by srujanika@gmail.com

ବାବୁ ମୁଁ ଆସିଲେ ମୋତେ ଭିତରକୁ ପଠାଇ ଦିଅନ୍ତି । କାରଣ ସେଟା ଅଫିସ । ତାଙ୍କର କାମରେ ବ୍ୟାଘାତ ହୁଏ । ମୁଁ ଭିତରକୁ ଗଲେ କହନ୍ତି ''ଏତେ ଡେରିକଲ ପ୍ରାଣନାଥ ତୁମ ଆସିବା ବାଟକୁ ଚାହିଁ ବସିଛି ।'' ଏମିତି ଥଟ୍ଟା ମୋତେ କରନ୍ତି । ଓଭାଲଟିନ୍ ଖାଇବାକୁ ପଡ଼େ । ତା'ଉପରେ ଜଳଖିଆ, ପାନ । କେବେ କେବେ ଖାଇବାକୁ ମଧ୍ୟ ନିମନ୍ତ୍ରଣ ଥାଏ । ସେ ଗପ କରିବେ ମୁଁ ବସି ବସି ଶୁଣିବି । ଶଚିବାବୁଙ୍କର ସ୍ତ୍ରୀଙ୍କର ରୂପ ମୁଁ ବର୍ଣ୍ଣନା କରିବାକୁ ଅକ୍ଷମ । ସେ ଏତେ ସୁନ୍ଦର ଥିଲେ ଯେ ତାହା କଳ୍ପନା କରିହେବ ନାହିଁ । ଏବେ ମନେ ହୁଏ ଯେ କବି ସୌନ୍ଦର୍ଯ୍ୟର ଯେଉଁ ସବୁ ବର୍ଣ୍ଣନା କରିଯାଇଛନ୍ତି ତାହା ସବୁ ତାଙ୍କରି ନିକଟରେ ହାର ମାନିବ । ମୁଁ ସେ ବୟସରେ କେବଳ ତାଙ୍କୁ ଚାହିଁ ରହୁଥିଲି । ମୋତେ ତାଙ୍କ ଆଡ଼କୁ କିଛି ସମୟ ଚାହିଁବାର ଦେଖିଲେ ସେ କହନ୍ତି ''କି ପ୍ରାଣନାଥ, ଲୋଭ ହେଉଛି କି ? ଏମିତି ଚାହଁ ନାହିଁ । ପିଲାଲୋକ ଖରାପ ହୋଇଯିବ ।'' ମୁଁ ଲାଜରେ ଝାଉଁଳି ପଡ଼େ । ଆଜି ସେ କଥା ମନେ ପଡ଼ିଲେ, ଗୋଟାଏ ସ୍ୱପ୍ନପରି ଲାଗୁଛି ।

ସନ୍ଧ୍ୟା ୮ଟା ହେବାରୁ ଅନିଚ୍ଛା ସତ୍ତ୍ୱେ ସମୁଦ୍ର କୂଳରୁ ବସାକୁ ଫେରି ଆସିଲି । ସେଠାରୁ ସାଥିରେ ଜଣେ ଓଭରସିଅର୍ ବାବୁଙ୍କୁ ନେଇ ମନ୍ଦିର ଆଡ଼େ ଗଲି । ଜଗନ୍ନାଥ ଦର୍ଶନ ହେଲା । ବେଢ଼ାରେ ବୁଲିଲୁ କିଛିକ୍ଷଣ । ମନେ ପଡ଼ିଲା କଟକରେ ପଢ଼ିବା ସମୟରେ ଥରେ ଚାରି/ପାଞ୍ଚଜଣ ସାଥିଙ୍କ ସହ ସାଇକେଲରେ ପୁରୀ ଯାଇଥିଲି । ଆମ ଯିବା ପୂର୍ବଦିନ ନରସିଂହପୁର ଯୁବରାଜ ପୁରୀ ଯାଇଥାନ୍ତି ଓ ଆମକୁ ମଧ୍ୟ ଯିବାପାଇଁ କହିଥାନ୍ତି । ଏଣୁ ରାତି ନଅଟା ବେଳେ ଖାଇସାରି ସାଥିଙ୍କ ସହ ସାଇକେଲରେ ଚାଲିଲୁ ପୁରୀ । ଜହ୍ନରାତି, କିନ୍ତୁ ରାସ୍ତାଟା ଭୁବନେଶ୍ୱର ପାଖା ପାଖିଠାରୁ ଜଙ୍ଗଲ । ଭୟ ତ ମନରେ ନ ଥାଏ । ଭାରି ଫୁର୍ତ୍ତିରେ ସ୍ଥାନେ ସ୍ଥାନେ ବସିଉଠି ସକାଳବେଳକୁ ଯାଇ ପୁରୀରେ ପହଞ୍ଚିଲୁ । ସମୁଦ୍ର କୂଳରେ କେଉଁ ରାଜାଙ୍କ ଘରେ ସେ ରହିଥିଲେ । ଆମେ ମଧ୍ୟ ଯାଇ ସେଠାରେ ପହଞ୍ଚିଲୁ । ଖୁବ୍ ଆନନ୍ଦରେ ବୁଲାବୁଲି କରି ନରସିଂହପୁର ରାଜାଙ୍କ ନିର୍ଦ୍ଦେଶରେ ଆସୁଥିବା ନାନା ପ୍ରକାର ଭୋଗ ଖାଉଥିଲୁ । ଭାରି ଆନନ୍ଦରେ ଦୁଇଦିନ ପୁରୀରେ କଟାଇ ଫେରି ଆସିଲୁ କଟକ । କିନ୍ତୁ ସୁପରିଣ୍ଟେଣ୍ଡେଣ୍ଟଙ୍କ ଠାରୁ କିଛି ଗାଳି ଖାଇଲୁ । ଏବେ ମୁଁ ଯେତେଦିନ ପୁରୀରେ ରହିଲି ସକାଳ ସନ୍ଧ୍ୟା ସମୁଦ୍ରକୂଳରେ ହିଁ ମୋର ସମୟ କଟୁଥିଲା । ସମୁଦ୍ର କୂଳରେ ବସିଲେ ଜୀବନର ପୁରୁଣା ପୋଥିର ପୃଷ୍ଠା ଆପେ ଆପେ ଓଲଟୁ ଥାଏ ।

ସେଦିନ ସନ୍ଧ୍ୟାରେ ଜୋଇଁଙ୍କ ସହ ତାଙ୍କର ଜଣେ ଓଭରସିୟରଙ୍କ ଘରକୁ ବାହାଘର ନିମନ୍ତ୍ରଣରେ ଯାଇଥିଲୁ । ସାମାନ୍ୟ ମିଠା ଖାଇ ପ୍ରେଜେଣ୍ଟେସନ ଦେଇ ଫେରିଲୁ । ମାଂସ ବାସ୍ନା ଆସୁଥାଏ । ମନେ ପଡ଼ିଲା ଭଦ୍ରଖରେ ରସିଦ୍ ମିଆଁଙ୍କ ସାନଭାଇ ମୋକିଦ ମୋ ସାଥିରେ ପଢୁଥିଲା । ତାଙ୍କର ଗୋଟାଏ ବାହାଘରକୁ ମୋତେ ନିମନ୍ତ୍ରଣ କରିଥାଏ । ବାହାଘର ଦିନ ମୁଁ



Digitized by srujanika@gmail.com

ତାଙ୍କ ଘରକୁ ଉପରବେଳା ୪ଟାକୁ ଗଲି । ସେ ମୋତେ ଖାଇବାପାଇଁ ଡାକିବାରୁ ମୁଁ ତାଙ୍କ ଘରେ ମାଂସ ବ୍ୟତୀତ ସବୁ ଖାଇବି କହିଲି । କିନ୍ତୁ ସେ ଜିଦ୍ କଲା, କହିଲା ବଜାର ମାଂସ ତ ମୁସଲମାନ ଖାସି କାଟି ବିକ୍ରୀ କରୁଛନ୍ତି ତାହା ଯଦି ଖାଇବ ଆମ ଘରେ କାହିଁକି ନ ଖାଇବ । ମୁଁ କହିଥିଲି ଯେ ତୁମର ବାହାଘର, ଏଇଟା ତୁମର ସାମାଜିକ ଅନୁଷ୍ଠାନ । ତା'ପରେ ତୁମେ ଯଦି ଆମ ଘରେ ହିନ୍ଦୁ ହାତରେ କଟା ମାଂସ ଖାଇବ ମୁଁ ତୁମ ଘରେ ଖାଇବି । ଧର୍ମ ସମସ୍ତଙ୍କଠାରେ ବଡ଼ । ତହୁଁ ମୋକିଦ୍ ତା'ଭାଇ ରସିଦ୍ ମିଆଁଙ୍କୁ ଡାକି ଆଣିଲା । ରସିଦ୍ ମିଆଁ ମୋ ଭାଇଙ୍କର ସାଙ୍ଗ । ଏଣୁ ମୁଁ ତାଙ୍କୁ ଯଥେଷ୍ଟ ସମ୍ମାନ ଦିଏ । ସେ ସମସ୍ତ ଶୁଣି କହିଲେ 'ବାୟା ଯାହା କହୁଛି ଠିକ୍ କଥା, ଆପ୍ ରୁଚି ଖାନା । ଏଣୁ ତାକୁ ଖାଲି ମିଠା ଖୁଆଇ ଦେ ।' ସେଦିନ ମିଠା ଖାଇ ଫେରିଥିଲି ।

ଆମ ଗାଁରେ ଅନ୍ୟାନ୍ୟ ଲୋକଙ୍କ ବ୍ୟତୀତ ଆମେ ଦୁଇଟି ବଂଶ ଖୁବ ବଡ଼ । ଗୋଟିଏ ଆମ ବଂଶ, ଆଉ ଗୋଟିଏ ଟିକିଏ ଦୂର ସମ୍ପର୍କ ସାଧୁ ପିଇସା ବଂଶ । ସାଧୁ ବାବୁ ଜଣେ କୁଚକ୍ରୀ ଲୋକ ଥିଲେ । ସେ ଆସି ଗାଁ ପାଖରେ ଗୋଟାଏ ଠାକୁର ବାଡ଼ିର ମହନ୍ତଙ୍କୁ ନିଶାସକ୍ତ କରି ଠାକୁରଙ୍କର ବହୁତ ଜମି ନିଜ ଦଖଲରେ ରଖିଥିଲେ । ମୋ ବଡ଼ବାପା ଚାକିରି ପରେ ଯେବେ ଗାଁକୁ ଫେରିଲେ ସେତେବେଳେ ସେ ମଠର ଅବସ୍ଥା ଦେଖି, ମୋକଦ୍ଦମା କରି ଅନେକ ସମ୍ପତ୍ତି ସାଧୁ ବାବୁଙ୍କ କବଳରୁ ମୁକ୍ତ କରାଇଥିଲେ । ସେହିଦିନୁ ଉଭୟ ପରିବାର ମଧ୍ୟରେ ସଦ୍‌ଭାବ ଆଉ ନ ଥିଲା । କିନ୍ତୁ ସାମାଜିକ ଆଚାର ସବୁ ଥିଲା । ମୋ ବଡ଼ବାପା ମୟୂରଭଞ୍ଜର ପାଞ୍ଚପୀଢ଼, ବାମନଘାଟିର P. W. D. S. D. O. ଥିଲେ । ବର୍ତ୍ତମାନ ଯେଉଁ ବାଙ୍ଗିରିପୋଷି ଘାଟି ମଧ୍ୟରେ ପୁରୁଣା ରାସ୍ତା ଅଛି ତାହା ତାଙ୍କରି ସମୟରେ ଗାଡ଼ି ଯିବା ପରି ଓସାର କରି ତୟାରି କରିଥିଲେ । ରାସ୍ତା ତୟାରି ପରେ ଘାଟି ମଝିରେ ଯେଉଁ ଠାକୁରାଣୀ ଅଛନ୍ତି ତାଙ୍କୁ ସେ ବସାଇ ଥିଲେ । ଘଞ୍ଚ ଜଙ୍ଗଲ । ବାଟୋଇଙ୍କୁ ଆଶ୍ରୟ ଦରକାର-ମାନସିକ, ଶାରୀରିକ । ଏଣୁ ଗୋଟିଏ ପଥର ଆଣି ତହିଁରେ ସିନ୍ଦୁର ବୋଳିଦେଇ ସ୍ଥାପନା କରି ତା'ପଛକୁ ଗୋଟାଏ କୂଅ ଖୋଳାଇ ଗୋଟିଏ ଜଞ୍ଜିର ଲଗାଇ ଦେଇଥିଲେ । ତତ୍‌ସମୟରେ ବାଙ୍ଗରିପୋଷି ଘାଟି ଗୋଟିଏ ଭୟଙ୍କର ସ୍ଥାନ ଥିଲା । ଆଜିକାଲି ରାତିରେ କେବେ କେମିତି ଗୋଟାଏ ଅଧେ ବାଘ ଦେଖାଯିବା ବ୍ୟତୀତ ଆଉ କିଛି ନାହିଁ । କିନ୍ତୁ ସେତେବେଳେ ବାଘ, ଭାଲୁ ଇତ୍ୟାଦି ଭରପୂର । ଦିନବେଳେ ବି ଭୟ ଲାଗି ରହିଥିଲା । ବାବାଙ୍କର ପାଞ୍ଚ ଭାଇ ଥିଲେ । ବଡ଼ ଚାରି ଭାଇ ଗୋଟିଏ ମାଆର, ସାନ ଭାଇ ଗୋଟିଏ ମାଆର । କିନ୍ତୁ ସେ ଯେ ସାବତ ମାଆର ପୁଅ ଏ କଥା ଜାଣିଥିବାର ଉପାୟ ନ ଥିଲା । ବଡ଼ବାବା ମୟୂରଭଞ୍ଜରେ ଚାକିରି କରିବା ସମୟରେ ତାଙ୍କର ଦ୍ୱିତୀୟ ଭାଇକୁ ଆଣି ବାମନ୍ ଘାଟି ସବ୍‌ଡିଭିଜନର ମହକୁମାର ବହଳଦାରେ ଓ ଚତୁର୍ଥ ଭାଇ ମୋ ବାବାଙ୍କୁ ଆଣି ଏଠାରେ ମୋକ୍ତାରି



Digitized by srujanika@gmail.com

କରିବାପାଇଁ ରଖାଇ ଦେଇଥିଲେ । ବଡ଼ବାବାଙ୍କ ଚାକିରି ସମୟ ଶେଷ ହେବାପରେ ଯେ ଭଦ୍ରଖ ତାଙ୍କ ଗାଁକୁ ଫେରିଗଲେ । ବହଳଦାରେ ଯେଉଁ ବଡ଼ବାବା ଥିଲେ ସେ ତାଙ୍କର ମସ୍ତିଷ ବିକୃତିଯୋଗୁ ଫେରିଗଲେ । ବାବା କେବଳ ରହିଗଲେ ଏଠାରେ । ଏହିଠାରେ ଆମେ ସମସ୍ତେ ଭାଇ ଭଉଣୀଙ୍କର ଜନ୍ମ ଓ ଏହିଠାରେ ବାବା ସମ୍ପତ୍ତି ଉପାର୍ଜନ କରିଯାଇଛନ୍ତି । ଆମେ ତିନି ଭଉଣୀ ଓ ପାଞ୍ଚ ଭାଇ । ବଡ଼ବାବାଙ୍କର ଗୋଟିଏ ପୁଅ । ତାଙ୍କ ତଳଭାଇଙ୍କର ଗୋଟିଏ ପୁଅ, ତାଙ୍କ ତଳଭାଇଙ୍କର ପୁତ୍ର ନ ଥିବାରୁ ଦାଦାଙ୍କର ଦୁଇପୁଅ ମଧ୍ୟରୁ କନିଷ୍ଠ ପୁତ୍ରକୁ ପୋଷ୍ୟପୁତ୍ର କରିଥିଲେ ।

ହଁ, ଗାଁରେ ଏହିପରି ଦୁଇ ପରିବାରର ଆନ୍ତରିକ ମନୋମାଳିନ୍ୟ ଥାଏ । ମୁଁ କିନ୍ତୁ ସେଠାକୁ ଗଲେ ତାଙ୍କ ଘରର ପିଲାମାନଙ୍କ ସହ ବେଶ୍ ମିଳାମିଶା କରେ । ତାଙ୍କ ଘରର ସାଧୁ ପିଇସା କିନ୍ତୁ ମୋତେ ଭଲ ଆଖିରେ ଦେଖି ପାରନ୍ତି ନାହିଁ । ବରଂ ଭୟ କରନ୍ତି ମୋର ଚେହେରା ଦେଖି । ମୁଣ୍ଡରେ ଲମ୍ବାବାଳ, କପାଳରେ ସିନ୍ଦୁର ଗାର, ପ୍ରାୟ ସବୁ ସମୟରେ ହାତରେ ତାଳ ଠେଙ୍ଗାଟି । ତାଙ୍କର ଧାରଣା ମୁଁ ଇଚ୍ଛା କଲେ ସେମାନଙ୍କୁ ଖୁନ୍ କରିଦେଇ ପାରିବି । ଏଣୁ ସେ ତାଙ୍କ ପିଲାଙ୍କୁ ମୋ ସହିତ ଓ ଆମ ମୁରବି ମୋତେ ତାଙ୍କ ପିଲାଙ୍କ ସହିତ ବେଶୀ ମିଶିବାପାଇଁ ଆକଟ କରନ୍ତି । କିନ୍ତୁ ଆମେ କେହି କାହା କଥା ଶୁଣୁ ନାହିଁ । ଆମ ଗାଁ ସାଳନ୍ଦୀ ନଦୀର ଉତ୍ତରକୁ ଓ ଜଗନ୍ନାଥପୁର ଗାଁ ନଦୀ ଆର ପଟକୁ ଆଷାଢ଼, ଶ୍ରାବଣ, ଭାଦ୍ର ମାସତକ ଡଙ୍ଗା ପଡ଼େ । ଅନ୍ୟ ଦିନେ ଆମେ ପାଣିରେ ପଶି ଯାଉ । ସ୍କୁଲ, କଚେରି ଟାଉନ ସବୁ ନଦୀର ଆର ପାଖରେ । ଜଗନ୍ନାଥପୁର ଗ୍ରାମରେ ତିନି ସାହିରେ ଝୁଲଣ ଯାତ୍ରା ହୁଏ । ଆମ ଗାଁରେ ମଧ ଆଗରୁ ହେଉଥିଲା । କିନ୍ତୁ ଏହି ମନୋମାଳିନ୍ୟପାଇଁ ବନ୍ଦ ହୋଇଯାଇଥିଲା । ମୁଁ ଗାଁରେ ରହିବାରୁ ପୁଣି ଝୁଲଣ ଯାତ୍ରା ଆରମ୍ଭ କଲୁ । ପ୍ରଥମେ ଆମେ ପିଲାମାନେ, ପରେ ମୁରବିମାନେ ମଧ ବାଧହୋଇ ଯୋଗଦେଲେ କେବଳ ଧର୍ମକୁ ଚାହିଁ । ସେ ସମୟରେ ଦେବତା ବ୍ରାହ୍ମଣ ଗୁରୁ ଲଘୁ ଜ୍ଞାନ ଯଥେଷ୍ଟ ଥିଲା । ଆଜିକାଲି ସମାଜର ଢଙ୍ଗ ଦେଖିଲେ ଦୀର୍ଘ ନିଃଶ୍ୱାସ ବ୍ୟତୀତ ଆଉ କିଛି କରିବାର ନାହିଁ ।

ଭଦ୍ରଖର ପୁରୁଣା ଟାଉନ୍‌ରେ ଅନ୍ୟାନ୍ୟ ଲୋକଙ୍କ ବ୍ୟତୀତ ବହୁତ ମୁସଲମାନ ଅଛନ୍ତି । ଚଉଦମହଲା (ବସ୍ତି) ମୁସଲମାନ ଅଛନ୍ତି । ହିନ୍ଦୁ ମୁସଲମାନ ଭେଦଭାବ ଆଦୌ ନ ଥିଲା । ତତ୍‌ସମୟରେ ଚୈତ୍ର ସଂକ୍ରାନ୍ତି ସମୟରେ ମହାଦେବଙ୍କ ନିକଟରେ ପୂଜାଘଟ ବସି ଗୋଟାଏ 'ତାମସା' ହେଉଥିଲା । ଏହି ତାମସା କେବଳ ଯେଉଁମାନେ ଘଟପୂଜା କରିବେ ସେହିମାନେ କରିପାରୁଥିଲେ । ଏଣୁ ମହାଦେବଙ୍କ ଠାରେ ଘଟ କରୁଥିବା ସମୟରେ ସେ ଘଟକୁ ଚୋରି ଯିବା ଭୟରେ ଖୁବ୍ ସତର୍କ ଥାଇ ରକ୍ଷା କରନ୍ତି । ତଥାପି କେବେ କେମିତି ଚୋରି ହୁଏ ଏବଂ ଯେଉଁମାନେ ନିଅନ୍ତି ସେମାନେ 'ତାମସା' କରନ୍ତି । 'ତାମସା' ତିନି ପ୍ରକାର ହୁଏ ମୋଗଲ ତାମସା, ଯୋଗୀ



Digitized by srujanika@gmail.com

ତାମସା, ଫକିର ତାମସା । ଉକ୍ତ ତାମସା ସବୁର ଅଧିକାଂଶ ଭାଷା ଉର୍ଦ୍ଦୁମିଶା ହିନ୍ଦୀ । ପ୍ରଥମ ରାତ୍ରୀ ଫକିର ତାମସା :-ଦୁଇଜଣ ମୁସଲମାନ ନିଜ ସ୍ତ୍ରୀମାନଙ୍କ ସହ ଅର୍ଥାଭାବପାଇଁ କଳିଆ କରି ଫକିର ହୋଇ ଦେଶ ଭ୍ରମଣ କରନ୍ତି ଓ ବହୁଦିନପରେ ଫେରି ଆସି ଯାହା ଦେଖିଥିଲେ, ମସ୍‌ଜିଦ୍, ମନ୍ଦିର, ଦେଶାଚାର, ଶିକ୍ଷା ସଂସ୍କୃତି ସମସ୍ତର ଗୀତାଭିନୟ କରନ୍ତି । ଯୋଗୀ ତାମସା ମଧ୍ୟ ପ୍ରାୟ ସେଇଆ । କିନ୍ତୁ ଫକିରଙ୍କର ଓ ଯୋଗୀମାନଙ୍କର ପ୍ରକାଶନ ଭିନ୍ନ ପ୍ରକାର ହୁଏ । କାରଣ ମୁସଲମାନ ସେମାନଙ୍କର ଗୌରବ ଓ ଯୋଗୀ ହିନ୍ଦୁମାନଙ୍କର ଗୌରବ ଗାଥା ପ୍ରକାଶ କରନ୍ତି । ଏହି ଦୁଇ ତାମସା ଆମର ବଡ଼ବାବାଙ୍କଦ୍ୱାରା ଲିଖିତ ହୋଇଥିଲା । ଏବଂ ସେ ନିଜେ ମଧ୍ୟ ଫକିର/ଯୋଗୀ ବେଶ ଧରି ଗାଉଥିଲେ ।

ମୋଗଲ ତାମସା ଟିକିଏ ଭିନ୍ନ ଧରଣର । ସେଦିନ ସନ୍ଧ୍ୟାବେଳକୁ ଯୋଡ଼ି ନାଗରା ଓ ମହୁରି ବାଦ୍ୟ ଆରମ୍ଭ ହୋଇଥାଏ । ଆସରର ଗୋଟିଏ ଧାରରେ ଦୁଇ/ତିନିଟି ଖଟ ଯୋଡ଼ି ପେଣ୍ଡାଲ ହୁଏ । ତା'ଉପରେ ଆଉ ଗୋଟିଏ ପେଣ୍ଡାଲ ଟିକିଏ ଛୋଟ ଆକାରର ହୁଏ । ତା'ଉପରେ ଗୋଟିଏ ଟେବୁଲ ଚେୟାର ପଡ଼େ । ଏ ସବୁ ଉପରେ ଭଲ ଆବରଣ ମଧ୍ୟ ପଡ଼ିଥାଏ । ରାତ୍ର ଆଠଟା ସମୟରୁ ନବାବଙ୍କ ଚୋପ୍‌ଦାର ଦୁଇଜଣ ସେହି ଆସରଠାରେ ଗ୍ରାମ ସାରା ବୁଲି ବୁଲି ଖୁବ୍ ବଡ଼ପାଟିରେ ନବାବଙ୍କ ସ୍ତୁତି ଗାଇଥାନ୍ତି :-ଯଥା "ନବେ ନବେ ମିହ୍ନା ସାହେବକା କଲମ ଦବେ" ଇତ୍ୟାଦି ନାନାପ୍ରକାର । ଆଉ ସେ ସବୁ ମନେ ନାହିଁ । ରାତ୍ର ୧୦ଟା ବେଳକୁ ବାଦ୍ୟକାରମାନେ ଆସନ୍ତି । ହାରମୋନିୟମ ଓ ପଖୋଜ ଝାଞ୍ଜ, କୁବୁଜି ନେଇ । କିଛିକ୍ଷଣ ବଜାଇବା ପରେ ପ୍ରଥମେ ଝାଡୁଦାର ଆସେ, ସେ ସମସ୍ତ ରାସ୍ତା ଝାଡୁ କରି ତା'ର ଝାଡୁର ତାରିଫ୍ ବର୍ଣ୍ଣନା କରେ ତା'ପରେ ଫରସ୍ (ବିଛଣା କଲାବାଲା) ସେ ମଧ୍ୟ ସେହିପରି ବିଛଣା, ସତରଞ୍ଜି, ଗାଲିଚାମାନର ଗୁଣ କୀର୍ତ୍ତନ କରି ଚାଲିଥାଏ । ତା'ପରେ ମୋଗଲବାଦ୍‌ସାହା ଆସନ୍ତି ତାନ୍‌ଜାନ୍‌ରେ ଚଢ଼ି, ଢୋଲ, ମହୁରି, ପଙ୍ଖା, ପତକା, ରୋଶଣି, ବାଣ ଇତ୍ୟାଦି ସହ । ଆସରର ପ୍ରାୟ ୨୫ଫୁଟ୍ ଦୂରରେ ତାନ୍‌ଜାନ୍‌ରୁ ଓହ୍ଲାନ୍ତି । ଚାରି ଜଣ ପାର୍ଶ୍ୱଚର ତାଙ୍କୁ ଧରିଥାଆନ୍ତି । ସେ ଜଗନ୍ନାଥଙ୍କ ପହଣ୍ଡି ବିଜେ ପରି ଆସି ପୂର୍ବନିର୍ଦ୍ଦିଷ୍ଟ ସିଂହାସନ ପାଖକୁ ଯାଆନ୍ତି ଓ ପଚାରନ୍ତି ତାହା କି ଠାକୁର ଓ କାହିଁକି ଯାତ୍ରା ଉତ୍ସବ । ଠାକୁରଙ୍କ ନାମ ଜାଣିଲାପରେ ସେ ମହାଦେବଙ୍କ ଗୋଟାଏ ଦୁହା ଗାଇ ସିଂହାସନ ଉପରେ ବସନ୍ତି । ବାଦଶାହାଙ୍କର ସ୍ତୁତି ଗାନ ହୁଏ ନାନା ପ୍ରକାରର । ତା'ପରେ ବାଦ୍‌ଶାହାଙ୍କର ତୃଷା ନିବାରଣପାଇଁ ଭିସ୍ତିକୁ ଡକରା ହୁଏ । ସେ ଗୋଟିଏ 'ମାସିକ୍'ରେ ପାଣି ନେଇ ହିନ୍ଦୀ ଓ ବଙ୍ଗଳାରେ ଗୀତ ଗାଇ ଗାଇ ଆସନ୍ତି । ଏ ସମସ୍ତ ଗୀତ ଖୁବ୍ ସୁନ୍ଦର ରାଗର । ଅତର ପାଣି ଆସରରେ ଛିଞ୍ଚା ହୁଏ । ବାଦଶା ଓ ଅନ୍ୟମାନେ ସରବତ ପିଅନ୍ତି । ସମସ୍ତଙ୍କୁ ଇନାମ ଦେଇ ବିଦା କରାଯାଏ । ତା'ପରେ ହୁକା ବରଦାର ଆସେ । ସେ ମଧ୍ୟ ହୁକାର ତାରିଫ୍ ଗାଏ । ଟିକିଏ ମନେ



Digitized by srujanika@gmail.com

ଅଛି ତାହା ଲେଖିଲି, ''ଦେଖୋ ଏ ହୁକ୍କା ହାମାରା, ଚିଲମ୍ ଯୋ ଫୁଲେ ଧାତୁରା; ନାଇଚା ଜୋ କୃଷ କା ବଂଶୀ, ପାନି ହେ ଗଙ୍ଗା ଯମୁନା'' ଏହିପରି ଅନେକ ତାରିଫ ପରେ ବାଦଶାଙ୍କୁ ହୁକ୍କା ଦିଆହୁଏ। ସେ ମଧ ବକ୍ସିସ୍ ନେଇ ଚାଲିଯାଏ। ତା'ପରେ ଚିଡ଼ିୟା ବାଲା ମଣିମୁକ୍ତାବାଲା, ଲୁଗାବାଲା ଇତ୍ୟାଦି ସେହିପରି ଆସି କିଛି 'ନଜରାନା' ଦେଇ ବକ୍ସିସ୍ ନେଇ ଚାଲି ଯାଆନ୍ତି। ଶେଷରେ ସେ ଦେଶର ଜମିଦାରଙ୍କୁ ଡକରା ହୁଏ। ସେ ପାଲିଙ୍କିରେ ବସି ଆସନ୍ତି। ସାଙ୍ଗରେ ଗୁମାସ୍ତା, ଗୁମାସ୍ତା ହାତରେ ବସ୍ତାନି, ଚାକର ହାତରେ ଗୋଟାଏ ପ୍ରକାଣ୍ଡ ଦୁଆତ ଓ ଗୋଟାଏ ଦୁଇହାତ ଲମ୍ବର ଶର କାଠି କଲମ। ବାଦଶାଙ୍କୁ କୁର୍ଣ୍ଣିସ୍ କରି ଜମିଦାର ସାହେବ ବାଦଶାଙ୍କ ନିର୍ଦ୍ଦେଶରେ ଗୋଟାଏ ଚେଆରରେ ବସନ୍ତି ଓ ବାଦଶା ତାଙ୍କର ନାମ ପଚାରନ୍ତି। ଗୁମାସ୍ତା ଗୋଟିଏ କାଗଜ କାଢ଼ି ପଢ଼ନ୍ତି ''ଶ୍ରୀ ଶ୍ରୀ ଶ୍ରୀ ମହାପାତ୍ର ହରିଚନ୍ଦନ ପ୍ରଜାବିନୋଦନ ପାପୀ ଦଳନ ଧର୍ମ ରକ୍ଷଣ ମାନ୍ଧାତା।'' ତା'ପରେ ଆୟ ବ୍ୟୟ ହିସାବ ମଗାହୁଏ। ଗୁମାସ୍ତା ଗୋଟିଏ ରୁଲ ବାଡ଼ି ଭଳି ଗୋଲ କାଗଜ ଖୋଲୁଥାଆନ୍ତି ଓ ପଢୁଥାନ୍ତି। ପଢ଼ା ଶେଷ ହେଲାବେଳକୁ କାଗଜର ପ୍ରଥମ ମୁଣ୍ଡ ଧରିଥିବା ଲୋକଟି ପ୍ରାୟ କୋଡ଼ିଏ ହାତ ଦୂରକୁ ଚାଲିଯାଇଥାଏ। ବାଦଶା ଆୟର ହିସାବ ମୁତାବକ ପ୍ରଜାଙ୍କପାଇଁ ଖରଚ ନ ହେବା ଶୁଣି ଭୀଷଣ ରାଗି ଯାଆନ୍ତି ଓ ଉର୍ଦ୍ଦୁରେ ନାନାଦି ଦୁହା ଅନର୍ଗଳ କହି ଚାଲନ୍ତି। ତା'ର ଅର୍ଥ ତୁମେ ଏତେ ଆଦାୟ କରୁଛ ରାଜସ୍ୱ ତକ ବାଦଶାଙ୍କୁ ଦେଇ ବାକି ସବୁ ନିଜପାଇଁ ଖରଚ କରୁଛ, ପ୍ରଜାଙ୍କପାଇଁ କିଛି କରୁ ନାହଁ। ଏଣୁ ତୁମକୁ ବାହାର କରି ଦିଆଯାଇ ନୂଆ ଜମିଦାର ନିଯୁକ୍ତ କରାଯିବ। ଏକଥା ଶୁଣି ଜମିଦାର କୁର୍ଣ୍ଣିଶ୍ କରିବାକୁ ଲାଗନ୍ତି ଓ ଚତୁର ଗୁମାସ୍ତାର ଇଙ୍ଗିତରେ ଇତିମଧ୍ୟରେ ଦୁଇ ଜଣ ସୁନ୍ଦରୀ ସୁବେଶା ଗଉଡୁଣୀ ଦହି ବିକ୍ରୟ କରିବାର ବାହାନାରେ ଗୀତ ଗାଇ ନାଚି ନାଚି ଆସି ହାଜର ହୁଅନ୍ତି। ସେମାନଙ୍କର ରୂପ, ନାଚ ଓ ଭଙ୍ଗୀ ଦେଖି ବାଦଶା ଖୁସି ହୋଇଯାଇ ଜମିଦାରଙ୍କୁ ମାଫ୍ କରନ୍ତି ଓ ଗଉଡୁଣୀଙ୍କ ରୂପରେ ଭୋଳ ହୋଇ ସିଂହାସନରୁ ଓହ୍ଲାଇ ଗଉଡୁଣୀଙ୍କ ନିକଟକୁ ଆସି ସେମାନଙ୍କୁ ବହୁତ ଅର୍ଥ ଦିଅନ୍ତି। ତା'ପରେ ତାମସା ଶେଷ ହୁଏ। ଏହା ଗୋଟିଏ ଦେଖିବାର ଜିନିଷ ଥିଲା। ଯେ ସମସ୍ତ ଗୀତ ଓ ତାରିଫ୍ ଆଦି ଗାଆନ୍ତି, ତାହା ସବୁ ଉଚ୍ଚାଙ୍ଗ ରାଗ ଓ ତାଳ ସଂଯୁକ୍ତ। ଏହା ଏତେ ଚିତ୍ତାକର୍ଷକ ଯେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଉଠିବାକୁ ଇଚ୍ଛା ହୁଏ ନାହିଁ। ହିନ୍ଦୁ ମୁସଲମାନ ସମ୍ପ୍ରଦାୟର ଏପରି ସମ୍ପର୍କ ଖାଲି ବାହ୍ୟ ନ ଥିଲା ଅନ୍ତରର ଥିଲା। ବର୍ତ୍ତମାନ ପୁଣି ମୋଗଲ ତାମସା ଲେଖା ଯାଉଛି ଓ ଅଭିନୀତ ହେଉଛି। କିନ୍ତୁ ତହା ସମ୍ପ୍ରଦାୟର ଅନ୍ତରଙ୍ଗତା ସହ ସମ୍ପର୍କିତ ନୁହେଁ-ସିଏ କେବଳ କଳା ହିସାବରେ ବ୍ୟବହୃତ।

ଆମ ଗାଁରେ ଶରତ ଭାଇ (ମୋ ମଝିଆ ବାବାଙ୍କ ପୁଅ) ଗାଁ ମୁରବି। ଉଚ୍ଚତାରେ ପାଞ୍ଚଫୁଟ୍ ଦୁଇଇଞ୍ଚ ମାତ୍ର ପ୍ରାୟ, କିନ୍ତୁ ପ୍ରତାପ ଭୀଷଣ। ତାଙ୍କୁ ଗାଁରେ ସମସ୍ତେ ମାନନ୍ତି। ଏପରିକି



Digitized by srujanika@gmail.com

ବୟସ୍କମାନେ ମଧ୍ୟ ସବୁ କାମରେ ତାଙ୍କର ପରାମର୍ଶ ନିଅନ୍ତି । ତାଙ୍କ ଆଗକୁ ଯାଇ କେହି ଟୋକା ଭରସି କରି କିଛି କହନ୍ତି ନାହିଁ । ମୁଁ କିନ୍ତୁ ତାଙ୍କୁ ଯାଇ ସବୁ କହେ ଓ ଦାବିକରେ । ମୁଁ ତ ଭାରି ଦୁଷ୍ଟ । ଯାହା କେହି କରିବାପାଇଁ ସାହସ ନ କରିବେ ମୁଁ ସେ କାମ ଏକା କରିଦିଏ । ମୋର ଗୋଟାଏ ଭଲ ଗୁଣ ମୁଁ ମିଛ କହେ ନାହିଁ । ଯାହା ଦୋଷ କରିଥାଏ ମାନିଯାଏ, ଏଣୁ ମୋତେ ସେ ଭାରି ଭଲ ପାଉଥିଲେ ।

ଆମର ଦୂର ସମ୍ପର୍କୀୟ ଆଉ ଜଣେ ସାଧୁ ଭାଇ ବୋଲି ଥିଲେ । ସେ ଯେ କେତେ ଭଲ ଥିଲେ, ଲେଖିହେବ ନାହିଁ । ଆମ ପ୍ରତି ତାଙ୍କର ଅସୀମ ସ୍ନେହ ଥିଲା । ଏପରିକି କରଞ୍ଜିଆରୁ ଗାଁକୁ କେହି ଭାଇ ଗଲେ, ଆମ ନିଜ ଘରେ ନ ରହି ତାଙ୍କ ଘରେ ରହୁଥିଲୁ । ସେ ମୋତେ ସବୁ କାମରେ ସାହାଯ୍ୟ କରୁଥିଲେ ମୁରବି ଦୃଷ୍ଟିରୁ ।

ଆଉ ଜଣେ ଦୂରସମ୍ପର୍କୀୟ ଭାଇ ଗଣେଶ ଭାଇ ଥିଲେ । ସେ ମୟୂରଭଞ୍ଜ ନଦା ଫରେଷ୍ଟ ଅଫିସରେ ଫରେଷ୍ଟର ଥିଲେ । ମୟୂରଭଞ୍ଜରେ ପାଞ୍ଚ/ଛଅ ବର୍ଷ ଚାକିରି କରିଥିଲେ । ଥରେ ତାଙ୍କୁ ଜ୍ୱର ହେବାରୁ ନଦା ଫରେଷ୍ଟ ଅଫିସର୍ ଗାର୍ଡ଼କୁ ଚାବିକାଠି ବଢ଼ାଇ ଦେଇ ଜଙ୍ଗଲବାଟେ ଗାଁକୁ ପଳାଇଲେ । ଆଉ ଚାକିରିକୁ ଫେରିଲେ ନାହିଁ । ଏଠାରୁ ଯାଇ ସେ ଚାଷ ଆଦି କାମ କରୁଥିଲେ ଓ ଗାଁ ସ୍କୁଲରେ କିଛିଦିନ ମାଷ୍ଟର ଥିଲେ । ତା'ପରେ Co-operativeରେ କାମ କରୁଥିଲେ । ସେହି କାମରେ ଥିଲାବେଳେ ସେ ଯେ କେତେ ଛେନା, ଦହି, ଘିଅ, ଗାଁ ପିଲାଙ୍କୁ ଖୁଆଇଥିଲେ ତାହା କହି ହେବନି । ସେ ଟିକିଏ ସଉକି ମଧ୍ୟ ଥିଲେ । ସେଠାରୁ ତାଙ୍କ ଚାକିରି କୌଣସି କାରଣରୁ ଗଲାପରେ କିଛିଦିନ ଭାରି ଦୁଃଖରେ ରହିଥିଲେ ।

ଗଣେଶ ଭାଇ କଥା ଲେଖୁଛି । କାରଣ ଭାଗ୍ୟ ମନୁଷ୍ୟକୁ କେତେ ଉପରକୁ ନେଇଯାଏ, କର୍ମ ମନୁଷ୍ୟକୁ କେତେ ନୀଚକୁ ନେଇଯାଏ, ତହିଁର ଗୋଟାଏ ଦୃଷ୍ଟାନ୍ତ ଏହି ଗଣେଶ ଭାଇ । ତାଙ୍କର ଚାକିରି ନ ଥାଏ ବଡ଼ ଦୁଃଖରେ ଥାଆନ୍ତି । ଏପରିକି ପିନ୍ଧିବା ଖାଇବା ମଧ୍ୟ କଷ୍ଟକର ହେଉଥାଏ । ସେହି ସମୟରେ ରେଲୱେରେ ଗୋଟିଏ ଗୁଡ଼ସ୍ କ୍ଲର୍କ ଚାକିରି ଭଦ୍ରଖ ଡିଭିଜନ୍‌ରେ ଖାଲି ଥାଏ । ଏ ଖବରପାଇ ସାଧୁ ଭାଇ ଗଣେଶ ଭାଇଙ୍କୁ ଦରଖାସ୍ତ କରିବାପାଇଁ କହିଲେ ଓ ତାଙ୍କପାଇଁ ଲୁଗା କମିଜ ଆଦି ଅନ୍ୟଠାରୁ ମଗାଇ ଦେଇ ତାଙ୍କ ହାତରେ ୨୫ଟଙ୍କା ଦେଇ ଖଡ଼ଗପୁରକୁ ପଠାଇଲେ । ତାଙ୍କ ଅଫିସରଙ୍କୁ ଦେଖା କରି ଦରଖାସ୍ତ ଦେବାପାଇଁ । ଅବଶ୍ୟ ଭଦ୍ରଖ ଷ୍ଟେସନ ମାଷ୍ଟର ଏ ସବୁ ତଥ୍ୟ ଦେଇ ସାହାଯ୍ୟ କରିଥିଲେ । ଗଣେଶ ଭାଇ ସେ ଟଙ୍କା ନେଇ ଖଡ଼ଗପୁର ଯାଇ ସାହେବର ଅଡ଼ରଲି ସହିତ ପ୍ରଥମେ ପାଞ୍ଚ ଟଙ୍କା ଦେଇ କଥାବାର୍ତ୍ତା ହେଲେ ଯେ ସାହେବଙ୍କୁ କେମିତି ଭେଟହେବ । ଅଡ଼ରଲି କହିଲା 'ଡଲା' ଦେବାକୁ ହେବ । ଗଣେଶ ଭାଇ



Digitized by srujanika@gmail.com

କହିଲେ ଆଉ ୨୦ଟଙ୍କା ମାତ୍ର ଅଛି । ମୁଁ ବଡ଼ ଗରିବ ଯଦି ହେବ ତ ଦେଖ । ଅଡ଼ର୍ଲି କହିଲା ''ଖୁବ୍ ହେବ, ଟଙ୍କା ଦେଇଯାଅ, କାଲି ୫ଟା ବେଳେ ଆସ ।'' ତହିଁ ଆରଦିନ ୫ଟା ବେଳେ ଗଲାରୁ ଅଡ଼ର୍ଲି ଗୋଟାଏ ମଦ ବୋତଲ ଓ ଅଳ୍ପକିଛି ଫଳ ନେଇ ବଗିଚାରେ ମେମ୍ ସାହେବ ଏକା ବସିଥିଲାବେଳେ ଡଲା ରଖିଦେଇ ଭେଟ କରାଇଦେଲା । ଗଣେଶ ଭାଇ ଲମ୍ବ ହୋଇ ସାଇବାଣୀର ଗୋଡ଼ ତଳେ ପଡ଼ିଗଲେ । ମେମ୍ ସାହେବ କହିଲେ ''ଆଚ୍ଛା ଦୁଃଖ କର ନାହିଁ । ସାହେବ ବର୍ତ୍ତମାନ ଆସିବେ । ମୁଁ ସବୁ କହିବି ।'' ଟିକିଏ ପରେ ସାହେବ ଆସିବାରୁ ମେମ୍ ସାହେବ କହିଲେ, ଏ ଗୋଟିଏ ମୋର ପୁଅ, ଏହାର ବ୍ୟବସ୍ଥା କର । ଏହା କହି ଦରଖାସ୍ତଟି ଦେଲେ । ସାହେବ ମଦ ପିଉ ପିଉ ଦରଖାସ୍ତଟି ପଢ଼ି ଓ ମେମ୍ ସାହେବଙ୍କର ଅନୁରୋଧରେ ଗଣେଶ ଭାଇଙ୍କୁ ଚାକିରିରେ ଭର୍ତ୍ତି କରି ପୁରୀ ଷ୍ଟେସନକୁ ପଠାଇଦେଲେ । ତା'ପରେ ହେଲା ଭାଗ୍ୟ ଉଦୟ । ଏକେତ goods clerkଙ୍କର ଉପୁରି ରୋଜଗାର ବହୁତ । ପୁଣି ପୁରୀ ଷ୍ଟେସନ । ସେ କିଛି ଦିନ ପରେ ନିଜ ଘରଦ୍ୱାର ତିଆରି କରାଇଲେ, ଗାଁରେ ଅନେକଙ୍କର ବହୁତ ଉପକାର କଲେ । କିଛି ଦିନ ପରେ, ପଇସା ହାତରେ ହେଲାରୁ, କୁସଙ୍ଗୀ ଜୁଟିଲେ, ମଦ ପିଆ ଚାଲିଲା । ସେହି ବର୍ଷ ଚନ୍ଦନ ଯାତ୍ରା ସମୟରେ କୌଣସି ସ୍ତ୍ରୀ ଲୋକ ସଂକ୍ରାନ୍ତରେ ତାଙ୍କୁ ଏତେ ମାଡ଼ ହେଲା ଯେ ସେ କିଛିଦିନ ପରେ ମରିଗଲେ । ଛୁଆପିଲା ସ୍ତ୍ରୀ, ଘରଦ୍ୱାର କୁଆଡ଼େ ଗଲା ? ବର୍ତ୍ତମାନ ଘର ଡିହ ବି ଅନ୍ୟର । ଏହି ହେଲା ଭାଗ୍ୟ.... ।

ଭଦ୍ରଖ ଅଞ୍ଚଳରେ ଖଜୁରି ରସ ବହୁତ ମିଳେ । ଏଣୁ ଲୋକେ ତାଡ଼ି ଖାଆନ୍ତି । ମୁଁ ରସ ଓ ତାଡ଼ିର ପ୍ରଭେଦ ଜାଣି ନ ଥିଲି । ଯେଉଁଦିନ ମୁଁ ପ୍ରଥମେ ରସ ଖାଇଲି ଭୋରରୁ ଉଠି, କି ସୁସ୍ୱାଦୁ ! ସେହିଦିନୁ ଅନେକ ସମୟରେ ମୁଁ ସକାଳୁ ଉଠି ଖଜୁରି ଗଚରେ ଚଢ଼ି ଯେଉଁ କଳସୀ ଗଛରେ ରସପାଇଁ ବନ୍ଧାଥାଏ ସେଥିରୁ ପେଟେ ପିଇଦିଏ ।

ଦିନେ ଉପରବେଳା ମୁଁ ନଈକୁ ଯାଇଥାଏ, ଦେଖିଲି ଯେ ଜଣେ ଚମାର ଗୋଟାଏ ଖଜୁରି ଗଛରୁ କଳସୀ ଓହ୍ଲାଇଲା । ମୁଁ ତାକୁ ପିଇବାକୁ ମାଗିଲି, ସେ କହିଲା ''ବାବୁ ଏ ଗୁଡ଼ା ତାଡ଼ି, ନିଶା ହେବ, ସକାଳ ସିନା ଭଲ ।'' ମୁଁ ତାକୁ ରାଗି କହିଲି,''ହଁ ନିଶା ହେବ ! ଦେ ମୋତେ ।'' ସେ ଡରିମରି ଢାଳିଲା ମୁଁ ପେଟେ ପିଇଦେଲି । ଖଟା ଓ ଝିମ୍ ଝିମା ସ୍ୱାଦୁ । ଯାହାହେଉ ସନ୍ଧ୍ୟାବେଳେ ଘରେ ବସିଥାଏ ବାନ୍ତି ହେଲା । ମୋର ଗୋଟେ ନୂଆବୋଉ(ସୁବଳ ଭାଇଙ୍କର ପ୍ରଥମା ସ୍ତ୍ରୀ) ଆସି ଘର ସଫା କରିଦେଲେ ଓ ଶୋଇ ପଡ଼ିବାପାଇଁ କହିଲେ ''ଭାଇ ଆସିଲେ ଖାଇବାକୁ ଡାକିନେବେ ।'' ଆମର ଡାକ୍ତର ବଡ଼ବାବାଙ୍କ ଘରେ ସେଦିନ ଖାଇବାର ଥାଏ । ଯାହାହେଉ ପ୍ରାୟ ରାତି ୯ଟା ବେଳେ ଆସି ସୁବଳ ଭାଇ ମୋତେ ଉଠାଇ ଖାଇବାପାଇଁ ନେଇଗଲେ ଓ



Digitized by srujanika@gmail.com

ମୋତେ ଉପରବେଳା ରସ ଖାଇଥିବାରୁ ମୃଦୁ ଭର୍ତ୍ସନା ଟିକେ ଦେଲେ। ଆମେ ଦୁଇ ଭାଇ ପିଣ୍ଡାଧାରରେ ମୁହାଁ ମୁହିଁ ହୋଇ ଖାଇ ବସିଲୁ ଓ ଡାକ୍ତର ବଡ଼ବାବା ଆମଠାରୁ ଟିକିଏ ଦୂରରେ ଖାଇ ବସିଥାନ୍ତି। ଦୁର୍ଯୋଗକୁ ମୁଁ ଖାଇ ଖାଇ ନିଶା ଜୋରରେ ବାରନ୍ଦା ତଳକୁ ଗଡ଼ିପଡ଼ିଲି। ସୁବଳ ଭାଇ ତରତର ହୋଇ "ଏତେ ବଡ଼ ପିଲାଟା ଖାଇଲାବେଳେ ନିଦରେ ଢୁଳାଉଛୁ" ବୋଲି ଟିକିଏ ରାଗି ପୁଣି ଭାତ ଥାଳି ପାଖରେ ବସାଇଦେଲେ। ଏ କଥା ଟିକିଏ ଦୂରରେ ଥିବା ବଡ଼ବାବା ଦେଖିପାରି ଖାଇବାଠାରୁ ଉଠି ଆସି ମୋତେ ଚାହିଁ କହିଲେ "ଏଟା ନିଦ ନା ନିଶା ଖାଇଛି ?" ଏହା କହି ମୋ ଆଖି ଦେଖି ମୋ ପାଟି ସୁଙ୍ଘି ଗନ୍ଧ ବାରି ଯେଉଁ ଗାଳି ! ମୁଁ ଅଜାଣତରେ ଖାଇଛି ବୋଲି କହିବା ସତ୍ତ୍ୱେ ସେ ଯେଉଁ ଗାଳି। ସେ ଗାଳିରେ ମୋ ନିଶା ଛାଡ଼ିଗଲା।

ବଡ଼ବାବା ମୋତେ ଭାରି ସ୍ନେହ କରୁଥିଲେ। ବଡ଼ବାବାଙ୍କର ନଦୀ ଆରପାରି ନୂଆବଜାରରେ ଗୋଟିଏ ଔଷଧ ଦୋକାନ ଥାଏ, ସେ ପ୍ରାଇଭେଟ୍ ପ୍ରାକ୍‌ଟିସ୍ ମଧ୍ୟ କରନ୍ତି। ଏହି ତାଡ଼ିଖିଆ ଘଟଣା ପରଦିନଠାରୁ ସେ ମୋତେ ସକାଳୁ ତାଙ୍କ ଡାକ୍ତରଖାନାକୁ ନେଇଗଲେ ଓ ତାଙ୍କ ପ୍ରେସ୍‌କିପ୍‌ସନ ମୁତାବକ ଔଷଧ ତିଆରି କରିବାର ଭାର ଦେଲେ। ସେ ଯାହା ଯାହା କହନ୍ତି ମୁଁ କରେ। ସକାଳୁ ଉଠି ଚାବିକାଠି ନେଇ ମୁଁ ପ୍ରଥମେ ଯାଇ ଦୋକାନ ଖୋଲେ। ସେ ପ୍ରାୟ ଅଧଘଣ୍ଟାକ ମଧ୍ୟରେ ପହଞ୍ଚନ୍ତି। ଦିନ ବାରଟା ପର୍ଯ୍ୟନ୍ତ ରହି ଦୋକାନ ବନ୍ଦ କରି ଘରକୁ ଖାଇବାକୁ ଆସୁ। ତା'ପରେ ଅପରାହ୍ଣ ତିନିଟାବେଳେ ଯାଉ। ମୁଁ ଚାରିଟା ବାଜିଲେ ଫୁଟବଲ ଖେଳିବାକୁ ବାହାରିଲାବେଳକୁ ବଡ଼ବାବାଙ୍କର କି ଦୟା ହେଲା କେଜାଣି କହିଲେ "ରହ ରହ ପାନେ ଔଷଧ ଦେଉଛି ଖାଇଯା ଭଲ ଖେଳିବୁ।" ଏହା କହି ମୋତେ ଆଢୁଆଳ କରି ଗୋଟିଏ ଶିଶିରୁ କିଛି ଢାଳି ପାଣି ସହ ମିଶାଇ ଖାଇବାକୁ ଦେଲେ। ମୁଁ ଶିଶିଟା କୌଣସି ରକମ ଦେଖିପାରିଥିଲି। ସେଦିନ ପ୍ରକୃତରେ ଥକ୍କା ଲାଗିଲା ନାହିଁ। ମୁଁ ମଝିରେ ମଝିରେ ସୁବିଧା ପାଇଲେ ପାଗ ଖରାପ ଥିଲେ ସେହି ଶିଶିରୁ ଢାଳି ପାଣି ମିଶାଇ ପିଇ ଦେଇ ଖେଳିବାକୁ ଯାଏ ଓ ବୋତଲରେ ପାଣି ମିଶାଇ ଦିଏ। ସେଟା Rum, ରଙ୍ଗ ଲାଲ। ଦିନେ ହଠାତ୍ ସେହି ଶିଶି ଉପରେ ଦୃଷ୍ଟି ପଡ଼ିବାରୁ ସେ ଶିଶିଟାକୁ ଏପାଖ ସେପାଖ କରି ଖୁବ୍ ଦେଖିଲେ। ଠିପି ଖୋଲି ତାଙ୍କ ହାତରେ ଠିପିଏ ଢାଳି ଚାଖିବା ପରେ ମୋ ଆଡ଼କୁ କିଛିକ୍ଷଣ ଚାହିଁ ପଚାରିଲେ "ତୁ ଏଥିରୁ ଖାଇ ପାଣି ମିଶାଇଛୁ କି ?" ମୁଁ ହଁ କଲି। କି ରାଗ !

ସେହି ଦୋକାନ ଘରେ ଗୋଟିଏ ବଡ଼ ବେଙ୍ଗ ଥାଏ। ମୁଁ ମାରି କାଢ଼ି ଦେବାପାଇଁ କହିଲେ ସେ ମନା କରନ୍ତି କହନ୍ତି "ନିରୀହ ବିଚରାଟାଏ ଅଛି କାହିଁକି ମାରିବୁ ? ମାରିବୁନି।" ଦିନେ ସକାଳୁ ମୁଁ ଦୋକାନ ଖୋଲି ଦେଖେ ସେ ବେଙ୍ଗଟା ଦୁଆର ବନ୍ଧ ପାଖରେ ଅଛି। ମୁଁ ଆଲମାରି



Digitized by srujanika@gmail.com

ଖୋଲି Carbolic Acid ବୋତଲଟା ଆଣି ତା ସିଲ ଖୋଲି ଖୁବ୍ ଯତ୍ନରେ ଠିପି ଢିଲା କଲି ଓ ଅନ୍ୟ ଆଡ଼କୁ ମୁହଁ ରଖି ତା'ପିଠିରେ ଦୁଇ/ତିନି ଟୋପା ପକାଇ ଦେଲି । ବେଙ୍ଗଟା ଦୁଇ/ଚାରି ଥର ହଲଚଲ ହୋଇ ସେଇଠି ମରିଗଲା । ବଡ଼ବାବା ଆସିବାର କିଛିକ୍ଷଣ ପରେ ଦୃଷ୍ଟି ଦୁଆରବନ୍ଧ ପାଖରେ ଥିବା ବେଙ୍ଗ ଉପରେ ପଡ଼ିଲା । ମୋତେ ପଚାରିଲେ "ବେଙ୍ଗଟା ଦୁଆର ମୁହଁ ପାଖରେ କାହିଁକି ଅଛି ? ମରିଯାଇଛି କିରେ ? ମୁଁ କହିଲି "ସକାଳୁ ଦୁଆର ଖୋଲିବାବେଳୁ ସେଇଠି ଅଛି । ଆପଣ ତ ମନା କରିଥିଲେ ସେଇଥିପାଇଁ ମୁଁ ତାକୁ ତଡ଼ିନି ।" ବୋଧହୁଏ ତାଙ୍କର ସନ୍ଦେହ ହେଲା । ସେ ହଠାତ୍ ଉଠି ଆସି ସେଠାରେ ବସି ନଇଁପଡ଼ି କିଛିକ୍ଷଣ ବେଙ୍ଗଟାକୁ ଚାହିଁଲେ । ତା'ପରେ ନଇଁ ପଡ଼ି ସୁଁ ସୁଁ କରି ଟିକିଏ ଶୁଙ୍ଘି ମୋତେ କହିଲେ ତାକୁ ଏସିଡ୍ ପକାଇ ମାରିଦେଲୁ । ଏସିଡ୍ ବୋତଲ ଖୋଲି ନାକକୁ ସେ ଧୂଆଁ ଗଲେ ତୁ ମରିଯିବୁ ଯେ, କେମିତି ଖୋଲିଲୁ । ମୁଁ ସବୁ କଥା କହିଗଲି । ଦେଖିଲି ତାଙ୍କ ମନରେ ଟିକିଏ ଦୁଃଖ ହେଲା । କିଛି ଦିନ ଧରି ଯେତେ ଲୋକ ଡାକ୍ତରଖାନା ଆସନ୍ତି ସମସ୍ତଙ୍କୁ ଏ କଥା କହିଛନ୍ତି ଓ ମୋତେ ଗାଳିଦେଇଛନ୍ତି । ସେଦିନ ବାରଟା ବେଳେ ଡାକ୍ତରଖାନା ବନ୍ଦ କରିବା ସମୟେ ସେ ନିଜେ ବେଙ୍ଗଟାକୁ ଗୋଟାଏ କାଗଜରେ ଗୁଡ଼େଇ ମାଟି ଖୋଳି ପୋତି ଦେଲେ ।

ଡାକ୍ତର ବଡ଼ବାବା ତାଙ୍କ ଡାକ୍ତରଖାନା ପଛପାଖ ଗୋଟେ ଛୋଟ ରୁମରେ ଔଷଧ ତିଆରି କରନ୍ତି । ସେଠି ଆରାମଚେୟାର ଆଉ ଗୋଟେ ଆଲମାରି ଭର୍ତ୍ତି ବହିପତ୍ର ଥାଏ । ଅଧିକାଂଶ ସମୟରେ କେହି ରୋଗୀ ନ ଥିଲାବେଳେ ସେ ଯାଇ ଆରାମ କରନ୍ତି । ମୁଁ ଉଙ୍କିମାରି ଦେଖିଲାବେଳକୁ ପଢୁଥାଆନ୍ତି । କହନ୍ତି ଡାକ୍ତରୀ ପତ୍ରିକା ସବୁ ଆସୁଚି ତ ! ସେ ନ ଥିଲେ ଦାଣ୍ଡ ଡାକ୍ତରଖାନା ଖୋଲାଥିବ ହେଲେ ଏଇ ରୁମଟା ସେ ବନ୍ଦ କରିଦିଅନ୍ତି । ଦିନେ ଦିନେ ବଡ଼ବାବାଙ୍କ ଉପରଓଳି ଆସିବା ଡେରିହୁଏ, ରୋଗୀ ନ ଥିଲେ ଭାବେ ଗଡ଼ିପଡ଼ିବି । ହେଲେ ସେଇ ରୋଗୀଙ୍କ ବେଞ୍ଚରେ ଗଡ଼ିବାପାଇଁ ଇଚ୍ଛା ହୁଏନି ।

ସେଦିନ ବଡ଼ବାବା କଚେରିକୁ ଯାଇ ତାଙ୍କ ରୁମ ବନ୍ଦ କରି ନ ଥିଲେ । ମୁଁ ଯାଇ ଆରାମଚେୟାରରେ ଗଡ଼ିପଡ଼ିଲି । ମେଡ଼ିକଲ ବହିତଳୁ ତାଙ୍କ ପଢ଼ା ପତ୍ରିକା ପଢ଼ିବାପାଇଁ ଟାଣିଆଣିଲି । ଓଲଟାଇବାକୁ ଯାଇ ଦେଖିଲି ସେଇଟା, ନାଁ ମନେ ନାହିଁ, ବଙ୍ଗଳା ପତ୍ରିକାଟିଏ, ସ୍ୱାଧୀନତା ଯୁଦ୍ଧ ଡାକରା ବେଳର । ତା' ସାଙ୍ଗକୁ ଆହୁରି କିଛି ବଙ୍ଗଳା ବହି । 'ଇନ୍‌କିଲାବ' ବୋଲି କଥା କଥାରେ କହନ୍ତି । ଏମିତି ଯେଉଁମାନେ ବିଦେଶୀ ସରକାର ବିରୁଦ୍ଧରେ ସଭା ସମିତି କି ପତ୍ରପତ୍ରିକା ପଢ଼ନ୍ତି ଏମିତି କି ଅରଟ ଚଳାନ୍ତି ବା ଖଦଡ଼ ପିନ୍ଧନ୍ତି । ଆମ ବଡ଼ବାବା ଅରଟ ଚଳାନ୍ତି ନାହିଁ କି ଖଦଡ଼ ପିନ୍ଧନ୍ତି ନାହିଁ, ମଝିରେ ମଝିରେ ଔଷଧ ଆଣିବା ନାଆଁରେ କଲିକତା ଯାଆନ୍ତି କିଛି



Digitized by srujanika@gmail.com

ଦିନପାଇଁ । ଗାଁ ଗଣ୍ଡା ବୁଲନ୍ତି ଔଷଧ ବାକ୍ସ ଧରି । ତା'ସାଙ୍ଗରେ ଯେ ସେ ଏମିତି କାମରେ ମାତିଚନ୍ତି- ମୋତେ ଡର ଲାଗିଲା । ଗତବର୍ଷ ଗାନ୍ଧିଜୀ ଆସିଥିଲେ ବାଲେଶ୍ୱର । ଭଦ୍ରଖ ଆସିବାର ଥିଲା ସଭା କରିବାକୁ । ବଡ଼ବାବା ଜୋର୍‌ରେ ଲାଗିପଡ଼ିଲେ ଚାନ୍ଦା, ସ୍ୱେଚ୍ଛାସେବୀ ଆଦି ଯୋଗାଡ଼ଯନ୍ତ୍ରରେ । ଆମେ ଯୁବଗୋଷ୍ଠୀ ମିଶି ଯାଇଥିଲୁ, ହେଲେ ଗାନ୍ଧିଜୀ ନ ଆସିବା ଖବର ପାଇ ମୁଁ ଓ ସେ'(ସଙ୍ଗାତ) ବାଲେଶ୍ୱର ଯାଇ ଓକିଲ ମୁକୁନ୍ଦ ଦାସଙ୍କ ଦ୍ୱାରେ ଘଣ୍ଟା ଘଣ୍ଟା ବସି ଗାନ୍ଧିଙ୍କ ଦର୍ଶନ କରି ଫେରିଲୁ । ଶରତଭାଇ ଆମ୍ଭମାନଙ୍କୁ ନେଇ ସତେ ଯେପରି କିଛି ଦୋଷ କରିଛୁ ଘରେ ଲୁଚାଇ ରଖିଲେ । ବଡ଼ବାବା ଏତେବଡ଼ ଆଖି ଦେଖାଇ ସେଥିରେ ଆଉ ମାତିବ ନାହିଁ ବୋଲି ମୃଦୁ ଧମକ ଦେଇଥିଲେ । କିନ୍ତୁ ଆଜି ସେ ନିଜେ ସେଥିରେ ପଶିଛନ୍ତି ଜାଣି ମୋର ସାହସ ବଢ଼ିଯାଇଥିଲା । କଟକରେ ଲୁଚି ଲୁଚି ଯାଇଥିଲୁ ମହାତ୍ମାଗାନ୍ଧିଙ୍କ କଟକ ଟାଉନହଲ ସଭାକୁ ବର୍ଷାକୁ ନ ମାନି । ହଷ୍ଟେଲରୁ ଲୁଚି ଯିବାକୁ ପଡ଼ିଥିଲା କାରଣ ସୁପରିଣ୍ଟେଣ୍ଡେଣ୍ଟଙ୍କର ବାରମ୍ବାର ତାଗିଦ୍ ଥିଲା ଏମିତି ରାଜନୀତିରେ ଯୋଗ ନ ଦେବାପାଇଁ । ଆମେ ସବୁ ଗଡ଼ଜାତିଆ ରାଜାଙ୍କ ଆଶ୍ରୟରେ ଅଛୁ, ରାଜା ବ୍ରିଟିଶ ଆଶ୍ରୟରେ-ଏଣୁ ଚିହ୍ନାପଡ଼ିଲେ ସାରା ପରିବାରଙ୍କପାଇଁ ଅସୁବିଧା ବୋଲି ବାରମ୍ବାର ତାଗିଦ ସତ୍ତ୍ୱେ ଆମେ କେତେଜଣ ଡେ ସ୍କଲାର୍‌ଙ୍କ ସହ ମିଶି ସ୍କୁଲରୁ ସିଆଡ଼େ ସଭା ସମିତିରେ ମିଶି ଡେରିରେ ଫେରୁଥିଲୁ । ଭଦ୍ରଖ ରହଣି ସମୟରେ ତା'ପରେ ବହୁବାର କଂଗ୍ରେସିଆ କାମରେ ସେ ମୋତେ ଏଠାକୁ ସେଠାକୁ ପଠାନ୍ତି ।

ଆଉ ଦିନକର କଥା । ସେ ସମୟରେ ସାମାଜିକ ସମ୍ପର୍କ ତଥା ନିଜ ନିଜ ମଧ୍ୟରେ, ପରିବାର ପରିବାର ତଥା ସାହି ସାହି ମଧ୍ୟରେ ଆଦାନ ପ୍ରଦାନ କେତେ ସୁନ୍ଦର ଥିଲା । କାହାରି କିଛି କାମ ନିମିତ୍ତ ହେଲେ ନିମନ୍ତ୍ରଣ ପାଇଲେ ନିଶ୍ଚୟ ତାଙ୍କ ଘରକୁ ଯିବାକୁ ହେବ, ନଚେତ୍ ନିଜର କାମ ପଡ଼ିଲେ ଅନ୍ୟ କେହି ଆସିବେ ନାହିଁ । ଏଣୁ ଇଚ୍ଛା ନ ଥିଲେ ବି ନିଜେ ବା ଅନ୍ୟ କାହାରିକୁ ନିଜର ପ୍ରତିଭୂ କରି ପଠାଇବାକୁ ହେବ । ମୋ ବଡ଼ବାବା ଏ ସବୁ ଖୁବ୍ ମାନୁଥିଲେ । ଥରେ ଆମ ଗାଁରୁ ପ୍ରାୟ ଦୁଇ ମାଇଲ୍ ଦୂରରେ କୋରଣ୍ଟ ମୌଜାରେ ଜଣେ ଓକିଲଙ୍କ ଝିଅ ବାହାଘରର ନିମନ୍ତ୍ରଣ ଆସିଲା । ବଡ଼ବାବା ମୋତେ ସେଦିନ ଯିବାପାଇଁ କହିଲେ । ମୁଁ ମଧ୍ୟ ଭୂରି ଭୋଜନ ଆଶାରେ ଯିବାପାଇଁ ତୟାର ହେଲି । ସନ୍ଧ୍ୟାରେ ଶରତ ଭାଇ ମତେ ଖାଇବାପାଇଁ ଡାକିଲେ । ମୁଁ ନିମନ୍ତ୍ରଣ ଖାଇବି, ଏଣୁ ଖାଇବାପାଇଁ ମନା କରିବାରୁ ସେ କହିଲେ ଆରେ ନିମନ୍ତ୍ରଣକୁ ଯିବୁ ହଁ କିନ୍ତୁ ଖାଇକରି ଯାଆ ସେଠାରେ କେତେ ବିଳମ୍ବ ହେବ । ମୁଁ କିନ୍ତୁ ତାଙ୍କ କଥା ଶୁଣିଲି ନାହିଁ । ତା'ପରେ ରାତି ନଅଟାବେଳେ ବଡ଼ବାବା ଡାକିଲେ ଯିବାପାଇଁ । ସେ ହାତରେ ଗୋଟାଏ ବଡ଼ ଲୋଟାରେ ପାଣିଧରି ବାହାରିଲେ । ମୁଁ ତାଙ୍କଠାରୁ ସେ ପାଣିଭର୍ତ୍ତି ଥିବା ଲୋଟାଟା ଧରି ତାଙ୍କ ପଛେ ପଛେ ଚାଲିଲି । ପାଣି ନେବା ଅର୍ଥ ସେ ଫୁଟାପାଣି ପିଅନ୍ତି । ଯାକୁ ତାକୁ ଡକାଡକି କରି ପ୍ରାୟ ୧୦/୩୦ ଘଣ୍ଟା



Digitized by srujanika@gmail.com

ସମୟରେ କୋରଣ୍ଡ ଗାଁରେ ପହଞ୍ଚିଲୁ । ପାଣି ଦେଲେ । ଗୋଡ଼ ହାତ ଧୋଇ ତାଙ୍କ ସାଜସଜ୍ଜା ହୋଇଥିବା ବଙ୍ଗଳାରେ ବସିଲୁ । ବହୁତ ଲୋକ, ଥୋକେ ତାସ୍, ପଶା ଖେଳୁଥା'ନ୍ତି । ଥୋକେ ଗପ ଗୁଳଜ କରୁଥା'ନ୍ତି । ୧୧/୩୦ ଘଣ୍ଟା ସମୟରେ ମୁଁ ବଡ଼ବାବାଙ୍କୁ ପଚାରିଲି ''କେତେବେଳେ ଖାଇବା ।'' ସେ ଚୁପ୍ ଚୁପ୍ ମୋତେ କହିଲେ ''ରହ ବର ଆସୁ ତା'ପରେ ଖିଆପିଆ ହେବ ।'' ମୁଁ ଚୁପ୍ କି ବସି ଦେଖୁଥାଏ । ବାରଟା ଗୋଟାଏ ବାଜିଲା, ପୁଣି ପଚାରିଲି ଖାଇବା କଥା । ପୁଣି ସେହି ଉତ୍ତର । ସେତେବେଳେ ବୁଝିଲି, ଶରତ ଭାଇ କାହିଁକି ଖାଇବାପାଇଁ କହୁଥିଲେ । ଖରାଦିନ, ଅବଶ୍ୟ ମଝିରେ ମଝିରେ ସରବତ ଗ୍ଲାସେ ମିଳୁଥିଲା । ରାତି ୨/୩୦ଟା ବେଳେ ବର ମହାରାଜ ଆସିଲେ; ରୋଶଣି, ବାଜା ବାଣରେ କମ୍ପିଲା ସେ ଖଣ୍ଡକ । ବର ଆସିଲାପରେ ବାଟବରଣ, ପାଦଧୂଆ, ଆସରରେ ସମସ୍ତେ ବସିଲେ । ମହା ପ୍ରସାଦ ସେବା ସରିଲା, ଭାବିଲି ଏଥରକ ଖାଇବାକୁ ଡାକିବେ । କିନ୍ତୁ ହାୟ ଭାଗ୍ୟ, ପୁରୋହିତମାନଙ୍କର ଆଶୀର୍ବାଦ ଶ୍ଳୋକ ଚାଲିଲା । ବରପକ୍ଷ ପୁରୋହିତ ଥରେ ଶ୍ଳୋକ ଗାଆନ୍ତି ତ କନ୍ୟାପକ୍ଷ ପୁରୋହିତ ଥରେ ଗାଆନ୍ତି । ସେଥିରେ ପୁଣି ମୁରବିମାନଙ୍କର କି ବାହାବା ଧ୍ୱନି । ସେତେବେଳକୁ ଭୋକ ଓ ରାଗରେ ମୋତେ କାନ୍ଦ ଲାଗିଲାଣି । ଯାହାହେଉ ଭଗବାନଙ୍କ ଦୟାରୁ ଖାଇବା ଡକରା ଆସିଲା । ଆମେ ସବୁ ଉଠିଯାଇ ପତ୍ରପାଖରେ ବସିଲୁ । ଭାତ, ଡାଲି, ମାଂସଝୋଳ, ଖଟା ରାଗ ଭାଜି ଇତ୍ୟାଦି ବହୁପ୍ରକାର । ଆଚ୍ଛା କରି ଖାଇଲି, ଭାବିଥିଲି ଉଠିବି, କିନ୍ତୁ ଆସିଲା ''ତସ୍‌ମି''; ଦେବା ସଙ୍ଗେ ସଙ୍ଗେ ଗୋଟାଏ ବିରାଟ ରୋଳ ଉଠିଲା ''ସଡ଼ର ସଡ଼ର ।'' ମୋତେ ଭାରି ହସ ଲାଗିଲା । ମୁଁ ଟିକିଏ ଜୋର୍‌ରେ ହସିଦେଲି, ଉଃ ବଡ଼ବାବାଙ୍କର କି ରାଗ । ଜଙ୍ଗଲିଟା, ''ସମାଜରେ ଏମିତି ହସନ୍ତି ?'' ବୋଲି ଗାଳିଦେଲେ । ଯାହାହେଉ ଖିଆପିଆ ସାରି ଉଠିଲା ବେଳକୁ ପୂର୍ବ ଆକାଶ ଫରଚା ହୋଇଗଲାଣି । ମୁଁ ବଡ଼ବାବାଙ୍କୁ କହିଲି ଚାଲନ୍ତୁ ଏକାଥରେ ନଈରେ ମୁହଁ ହାତ ଧୋଇ ପଳାଇବା । ଆସିଲୁ ମଧ୍ୟ । ଏ ନିମନ୍ତ୍ରଣ ଖିଆ ମୋର ଗୋଟାଏ ତିକ୍ତ ଅନୁଭୂତି । ମୁଁ କାହିଁକି ଅନେକଙ୍କୁ ଖରାପ ଲାଗୁଥିବ, କିନ୍ତୁ ଯିବାକୁ ହେବ, ଖାଇବାକୁ ହେବ । ସେଥିରେ ପୁଣି ବସିଥିବା ପଙ୍‌କ୍ତି ମଧ୍ୟରେ ବୟୋଜ୍ୟେଷ୍ଠ ପ୍ରଥମେ ଖାଇବା ଆରମ୍ଭ କରିବେ ଓ ପ୍ରଥମେ ଆସନରୁ ଉଠିଲାପରେ ବୟସାନୁଯାୟୀ ଧୀରେ ଧୀରେ ଅନ୍ୟ ସମସ୍ତେ ଖାଇବେ ଓ ଉଠିବେ । ଆଜିକାଲି ତ ଟେବୁଲ ଚେୟାରରେ ଯେ ଯେତେବେଳେ ଆସିଲା ଖାଇଦେଇ ଚାଲିଯାଉଛନ୍ତି ହୋଟେଲ ପରି । ଯେପରି କାହାରି କାହା ସହିତ ସମ୍ବନ୍ଧ ନାହିଁ । ଯାହାହେଉ ଏଠାପରଠାରୁ ଏପରି ନିମନ୍ତ୍ରଣରେ ମୁଁ ଆଉ ବଡ଼ବାବାଙ୍କ ସହ କୁଆଡ଼େ ଯାଏ ନାହିଁ ।

ଗତ କଥା ଭାବୁ ଭାବୁ ଦେଖିଲି ରାତି ହୋଇଗଲଣି । ସମୁଦ୍ର ବାଲିରୁ ଲୋକେ ପତଳା ହୋଇଗଲେଣି । ମୁଁ ମଧ୍ୟ ଧୀରେ ଧୀରେ ଉଠି ଝିଅଘର ଆଡ଼କୁ ଚାଲିଲି । ଘରେ ପହଞ୍ଚି କିଛିକ୍ଷଣ



Digitized by srujanika@gmail.com

ପରେ ଖାଇପିଇ ଶୋଇଲି । ସମୁଦ୍ର ହାଓ୍ୱା, ନିଦଟା ବେଶ୍ ହୋଇଗଲା । ଖୁବ୍ ସକାଳୁ ଉଠି ନିତ୍ୟକର୍ମ ସାରି ଚାଲିଲି ପୁଣି ସମୁଦ୍ର କୂଳ ଆଡ଼କୁ । ସେଦିନ ମୁଁ ଯେଉଁଠାରେ ବସେ ସେଠାକୁ ନ ଯାଇ ପୂର୍ବଆଡ଼କୁ ନିଛାଟିଆ ଆଡ଼କୁ ଚାଲିଗଲି । ଯାଇ ବାଲି ଉପରେ ଥିବା ଗୋଟାଏ ପୁନାଙ୍ଗଗଛ ମୂଳରେ ବସିଲି । ଚିର ନୂତନ ସୌନ୍ଦର୍ଯ୍ୟ ଦେଖୁଥାଏ । କିଛିକ୍ଷଣ ପରେ ଦେଖିଲି ଟିକିଏ ଦୂରରେ ଝାଉଁଗଛ ମୂଳେ, ଚାରି/ପାଞ୍ଚଜଣ ଝିଅ ଓ ତିନି/ଚାରିଜଣ ପୁଅପିଲା ବସି ପାଟିତୁଣ୍ଡ ହସ ତାମସା ଲଗାଇଛନ୍ତି । ଗୋଟାଏ ବଡ଼ ସତରଞ୍ଜି ବିଛଣା ହୋଇଥାଏ । ବାସ୍କେଟ୍ ଓ ଟିଫିନ୍ କେରିଅରରେ ଖାଇବା ପିଇବା ଜିନିଷ ଥାଏ । କିଛିକ୍ଷଣ ପରେ ଜଣେ ଝିଅ, ଟିକିଏ ବୟସ୍କା ସେଠାରେ ବସି ରହିଲେ । ଅନ୍ୟମାନେ ସମୁଦ୍ରଭିତରକୁ ଗଲେ । ଅବଶ୍ୟ ନୋଳିଆଙ୍କ ସାହାଯ୍ୟରେ । ପ୍ରାୟ ଅଧଘଣ୍ଟାଏ ଗାଧୁଆ ପରେ ଶୁଖିଲା ଲୁଗାପଟା ପିନ୍ଧି ସମସ୍ତେ ବସିଗଲେ ଖାଇବାପାଇଁ । ନାନା ପ୍ରକାର ମିଠା, ତରକାରି ଆଦି ଭାରି ଆନନ୍ଦରେ ଖିଆପିଆ କରି ଚାଲିଗଲେ ।

ମାଂସ ବାସ୍ନା ନାକରେ ବାଜିଲା । ମୋର ମନେ ପଡ଼ିଗଲା ଆମ ଗାଁରେ ଆମେ କେତେଜଣ କିପରି ଭୋଜି ଖାଇଥିଲୁ । ମୁଁ, ସୁବଳ ଭାଇ, ଗୋବିନ୍ଦ, ଗୋପ, ମୋହନ ଏଇ ପାଞ୍ଚଜଣ । ସେଦିନଟା ସାରା ବର୍ଷା ହେଉଥାଏ । ରାତି ନଅଟା ବେଳେ କଥା ପଡ଼ିଲା ଫିଷ୍ଟ କରିବା । ଫିଷ୍ଟ ବୋଇଲେ ଲୁଚି ଆଉ ମାଂସ ତରକାରି । ଏତେ ରାତିରେ ତ ମାଂସ ମିଳିବନି, ପଠାଣ ସାହିରୁ କୁକୁଡ଼ା ଆଣି ତରକାରି ହେବ । ସେ ସମୟରେ ଉଚ୍ଚବର୍ଣ୍ଣ ଲୋକଙ୍କର କୁକୁଡ଼ା ଖାଇବା ନିଷେଧ । ଚୋରି କରି ଖାଇଲେ ପରେ ମୁରବିମାନେ ଜାଣିଲେ ମହା ବିପଦ । ଏଣୁ କଅଣ କରାଯିବ କଳ୍ପନା ଜଳ୍ପନା ଚାଲିଥିଲାବେଳେ ମୁଁ ମାଂସ ଯୋଗାଇବାର ଭାର ନେଲି । ଗୋପ ସହ ଅନ୍ୟମାନେ ବଜାରରୁ ଘିଅ, ମସଲା, ଅଟା ଆଦି ଆଣିବାର ଭାର ନେଲେ । ଆମ ଶରତଭାଇଙ୍କର ନଦୀକୂଳରେ ଟିକିଏ ନିଛାଟିଆ ଜାଗାରେ ଗୋଟାଏ ବୈଠକଖାନା ଘର ଥାଏ । ଚାରିଆଡ଼େ ପାଚେରି । ସେଇଠି କରାଯିବାର ସ୍ଥିର ହେଲା । ମୁଁ ଓ ଗୋପ ସହ ଡଙ୍ଗା ଘାଟକୁ ଗଲୁ । ଆମ ଗାଁ ଏପଟେ, ସେପଟେ ଜଗନ୍ନାଥପୁର ଗାଁ । ଯିବା ଆସିବାପାଇଁ ପ୍ରାୟ ସବୁ ଥିଲାବାଲାଙ୍କର ଗୋଟିଏ ଗୋଟିଏ ହୁଲି ଡଙ୍ଗା ଥାଏ । (ଓସାର ଦେଢ଼ଫୁଟ୍ ଲମ୍ବ ୧୮ଫୁଟ୍ ହେବ) ସେଟା କୂଳରେ ପାଣିରେ ବୁଡ଼ି ରହିଥାଏ । କାରଣ ଡଙ୍ଗା ମଝିରେ କଣା ଥାଏ । ଆମେ ଦୁଇଜଣ ଯାଇ ପାଣିରୁ ଡଙ୍ଗା ଉଠାଇ ପାଣି ବାହାର କରି ହାତରେ ଆହୁଲାଇ ନଦୀ ଆରପଟକୁ ଗଲୁ । ସେଠାରେ ଗାଁ ଶେଷକୁ ଗୋଟାଏ ବଡ଼ ଆମ୍ବ ବଗିଚା ଥାଏ । ଯିବାର କାରଣ ସେହି ଗାଁରେ ଛକଡ଼ି ପିଉସାଙ୍କ ଘର ଆଉ ସେ ବଗିଚା ତାଙ୍କର । ତାଙ୍କର ଦୁଇଜଣ ପାଣ ମୂଲିଆ ସେଇ ବଗିଚାରେ ଦୁଇଟି ଛୋଟ ଛୋଟ ଘର କରି ରହିଥାଆନ୍ତି । ସେଇଠି ପିଉସା ଘର ଛେଳି ଖାସି ମିଶି ସାତ/ଆଠଟା ଥାଆନ୍ତି । ସେ



Digitized by srujanika@gmail.com

ସବୁ ମୂଲିଆ ଘର ପିଣ୍ଡାରେ ବନ୍ଧା ହୁଅନ୍ତି । ମୋର ଲକ୍ଷ୍ୟ ଥାଏ ଗୋଟିଏ ସାତ/ଆଠ ସେର ଓଜନ ଖାସି ଉପରେ । ଆମେ ଦୁଇଜଣ ଡଙ୍ଗା ରଖିଦେଇ ଚୁପ୍ ଚାପ୍ ମୂଲିଆ ଘରକୁ ଗଲୁ । ମୁଁ ଧୀରେ ଧୀରେ ଯାଇ ଖାସି ମୁହଁକୁ ଚିପି ଧରିଲି, ଟେକି ନେଇ ଉଠାଇ ଆଣିଲି ସିଧା ଡଙ୍ଗାକୁ । ଗୋପକୁ କହିଲି ତୁ ଏକା ଆହୁଲା ପକା । ଖାସିଟାକୁ ବେଶ୍ ଜୋର୍‌ରେ ଧରିଥାଏ । ମୁହଁ ବନ୍ଦଥାଏ ବାଁ ହାତରେ । ଦେହଟା ଗୋଟାଏ ହାତରେ ପେଟ ଉପରେ ଚାପ ରଖିଥାଏ । ଡଙ୍ଗାରେ ବସି କିଛି ବାଟ ଗଲା ପରେ ଖାସି ମୁହଁକୁ ପାଣି ଭିତରେ ମାଡ଼ିଦେଲି । ବାସ୍ ଛଟପଟ ବନ୍ଦ । କୂଳରେ ଡଙ୍ଗ ରଖି ଖାସିକୁ କାନ୍ଧରେ ପକାଇ ସେହି ବୈଠକଖାନା ଘରେ ହାଜର । ଆମକୁ ଓ ଖାସିକୁ ଦେଖି ସମସ୍ତଙ୍କର କି ଆନନ୍ଦ । ଇତିମଧ୍ୟରେ ହଣ୍ଡା କଡ଼େଇ ଆଦି ଠୁଳ ହୋଇଯାଇ ସାରିଥାଏ । ଖାସି ଚମଡ଼ା ଛାଲି, ଚମଡ଼ା ମୁଣ୍ଡ ଓ ଗୋଡ଼ ସବୁ ନେଇ ନଈରେ ଫୋପାଡ଼ି ଦେଲୁ, ମାଂସ କଟା ହେଉଥାଏ । ମନେ ପଡ଼ିଲା ସବୁ ତ ହେଲା, କାଠ ନାହିଁ । କାଠ ମିଳିବା କଷ୍ଟକର । ବୈଠକଖାନା ଘରେ ଘସି ଥାଏ । କିନ୍ତୁ କାଠ ନ ହେଲେ ଚଳିବନି । କାହା ଘରୁ ମଧ୍ୟ ଏତେ ରାତିରେ କାଠ ମିଳିବ ନାହିଁ । ମିଳିଲେ ମଧ୍ୟ ଆମ କାରସାଦି ଜଣାପଡ଼ିବ । ଯାହାହେଉ ମୁଁ କହିଲି ''ଦୁଇ ଜଣ ମୋ ସହିତ ଆସ ମୁଁ କାଠ ଆଣିବି ।'' ମୋତେ କେଉଁଠୁ ଆଣିବୁ ବୋଲି ପଚାରିଲାରୁ ମୁଁ କିଛି କହିଲି ନାହିଁ । ମୁଁ ଗୋପ ଓ ମୋହନକୁ ସାଥିରେ ନେଇ ଆମ ଗାଁ ଧୋବାସାହି ତୁଠକୁ ଚାଲିଲି । ଧୋବାମାନେ ଲୁଗା କାଚନ୍ତି ଖଣ୍ଡିଏ ଖଣ୍ଡିଏ ପଟାରେ । କାଚିସାରି କୂଳରେ ଥିବା ବରଗଛ ମୂଳେ ରଖିଦେଇ ଘରକୁ ଯାଆନ୍ତି । ସେହି ଗଛ ମୂଳକୁ ଯାଇ କିଛି ପଟା ନେଇ ଆସିଲୁ । ସୁବଳ ଭାଇ ''କିନ୍ତୁ ସକାଳେ ଧୋବାମାନେ ମାରିପକେଇବେ'' ବୋଲି କହୁଥାଏ । କିଏ ଶୁଣୁଛି ସେ କଥା । କଟୁରୀରେ ପଟାମାନ ଚିରିଲୁ । ରନ୍ଧା ହେଲା । ଲୁଚି ସାଙ୍ଗକୁ ମାଂସ କରି ତଣ୍ଟି ପର୍ଯ୍ୟନ୍ତ ଖାଇଲୁ । ଖାଇବାପରେ ବଳିଲା ପ୍ରାୟ ସେରେ ଖଣ୍ଡେ ମାଂସ ତା' ସାଙ୍ଗକୁ ଅଧହଣ୍ଡା ଝୋଳ । ତାକୁ ରଖିଦିଆଗଲା । ସକାଳୁ ଦାନ୍ତ ଘଷି ସାରି ମୁଢ଼ି ପକାଇ ଖାଇବାପାଇଁ । ରାତାରାତି ସମସ୍ତ ପରିଷ୍କାର କରିଦେଲୁ । କିଛି ଚିହ୍ନ ରହିଲା ନାହିଁ । ଯେ ଯାହାର ଘରକୁ ଗଲୁ ।

ଖୁବ୍ ସକାଳୁ ନଈକୁ ଯାଇ ନିତ୍ୟକର୍ମ ସାରି ମୁଢ଼ି ନେଇ ଆସି ଦେଖୁ ଯେ ସୁବଳ ଭାଇ ଓ ଗୋବିନ୍ଦ ଦୁଇଜଣ ଯାକ ବସି ସେ ହଣ୍ଡାର ସବୁ ମାଂସ ଖାଇ ଝୋଳରୁ ପ୍ରାୟ ପାଏ ହେବ ହାପୁଡ଼ି ସାରି ଦେଲେଣି । ଆମକୁ ଦେଖି କହିଲେ ଦିଅ ମୁଢ଼ି ଢାଳିଦିଅ । ଆମେ ମୁଢ଼ି ଢାଳିଦେଇ ଶୁଖିଲା ମୁହଁରେ ମୁଢ଼ି ଖାଇଲୁ । ସେ ଦୁଇଜଣ ମଧ୍ୟ ଆମ ସଙ୍ଗେ ଖାଇଲେ । ଖାଇସାରିଲା ପରେ ହଣ୍ଡାଟି ନେଇ ମଜାମଜି କରି ଯଥାସ୍ଥାନରେ ରଖିଦେଲୁ । ଇତିମଧ୍ୟରେ ଧୋବାସାହି ତୁଠରେ ପାଟିଗୋଳ ଲାଗିଛି । ପଟା କୁଆଡ଼େ ଗଲା ? ଆମ ଭେଳା ବୁଡ଼ିଲା । ଆମ ପଟା କିଏ ନେଇଗଲା ବୋଲି



Digitized by srujanika@gmail.com

ପାଟି କଲେ।'' ମୁଁ ତାଙ୍କୁ କହିଲି ''ପାଣିରେ ଭାସି ଯାଇଥିବ। ପଟା କିଏ ନେବ।'' ଅବଶ୍ୟ ବରଗଛମୂଳେ ଚାଖଣ୍ଡେ ପାଣି ଚାଲିଥାଏ। ସେମାନେ କହିଲେ ଆଉ ସବୁ ପଟା ଅଛି କେବଳ ଆଠଟି ପଟା ଭାସିଗଲା କେମିତି। ଏହିପରି ପାଟି କରି କରି ସେମାନେ ମୁରବି ଶରତଭାଇଙ୍କ ପାଖକୁ ଆସି କହିଲେ। ''ବଡ଼ ସାଆନ୍ତେ ଆମ ପଟା କିଏ ନେଇଗଲା। ଆମ ଭେଳା ବୁଡ଼ିଗଲା।'' ଭାଇ ମଧ ଭାସି ଯାଇଥିବ ବୋଲି କହିଲେ। କାରଣ ଧୋବା ପଟା ଚୋରି ହେବା କଥା ନୁହେଁ। ଏହି ସମୟରେ ସୁବଳ ଭାଇ ଘରୁ ବାହାରି କହିଲେ ''ହଉ ଗଲାଣି ତ ଆଉ ବ୍ୟସ୍ତ ହେଲେ କଅଣ ହେବ। ଆସ ଆମ ବାଡ଼ିରୁ ଦୁଇଟା ଲମ୍ବ ପଟା ଦେବି ତାକୁ ଆଠଖଣ୍ଡ କରିନେବ।'' ଧୋବାମାନଙ୍କର ସେ କି କୃତଜ୍ଞତା। ''ଯାହାହେଉ ସାଆନ୍ତେ ଆମ କୁଳ ରଖିଲ।'' ଇତ୍ୟାଦି ଇତ୍ୟାଦି କହି ଯାଇ ପଟାନେଇ ସୁବଳ ଭାଇଙ୍କ ଜୟ ଜୟକାର କରି ଚାଲିଗଲେ। ସେମାନେ ସିନା ଚାଲିଗଲେ କିନ୍ତୁ ଆମ ବଡ଼ ସାଆନ୍ତେ ଟିକିଏ କେମିତି ଆଖିରେ ସୁବଳ ଭାଇଙ୍କ ଆଡ଼କୁ ଚାହିଁଲେ। ମୁଁ ତାଙ୍କର ଏ ଭାବ ଦେଖି ଚମ୍ପଟ। ମୁଁ ଜାଣେ ମୋତେ ପଚାରିବେ। ଯାହାହେଉ ଦିନଟା ସାରା ତାଙ୍କୁ ଦେଖା ଦେଲିନି। ରାତିରେ ଖାଇଲାବେଳେ ''ଧୋବା ପଟା କିଏ ନେଲା'' ବୋଲି ମୋତେ ପଚାରିଲେ। ମୁଁ ସିଧା ସଳଖ 'ନାଇଁ' ବୋଲି କହି ଚାଲିଯାଉଥିଲି। ମୋ ହାତ ଚଟ୍‌କି ଧରି ପକାଇ କହିଲେ ''ସତ କହ, ନିଶ୍ଚୟ ଏ ଭିତରେ କିଛି ରହସ୍ୟ ଅଛି। ସୁବଳ କୁହା ନାହିଁ ବୋଲା ନାହିଁ ଏତେ ଦୟା କଲା କେମିତି ?'' ତାଙ୍କୁ ପଟା ଆଣି ଫିଷ୍ଟ କରିବା କଥା କହିଲି। ବଜାରରୁ ମାଂସ ଓ ଅଟା ଆଣି ଖାଇବା କଥା କହିଦେଲି। ଭାବିଥିଲି ସରିଗଲା। ତା'ଆରଦିନ ସକାଳେ ଭାଇ ଶୁଣିଲେ ଯେ ଜଗନ୍ନାଥପୁର ମାଳି ବଗିଚାରୁ ସେ ପାଣଘରୁ ପିଉସା ଘର ଖାସି କିଏ ଚୋରି କରି ନେଇଗଲା। ପୁଣି ମୋତେ ଡକରା; ଏଥର ଭାରି ସଂଗୋପନରେ-''କେତେ ରାତିରେ ଫିଷ୍ଟ ହେଲା, ଏତେ ରାତିରେ ମାଂସ କେଉଁଠୁ ଆଣିଲ। ବଜାରରେ ତ ମିଳି ନ ଥିବ।'' ଇତ୍ୟାଦି ନାନା ଜେରା ପରେ ଅସଲ କଥାଟି କହିଦେଲି। ପ୍ରଥମେ ଭାଇ ହସ ସମ୍ଭାଳି ପାରିଲେ ନାହିଁ। ମୁଁ ହସି ଦେବାରୁ ଠୋ କରି ଗୋଟେ ଚାପୁଡ଼ା। ବାସ୍, ମୁକ୍ତି।

ଆମ ପାରିବାରିକ ନାମକର୍ଣ୍ଣ ଗୁରୁ ଆମ ଗୋସାଇଁ ଘର। ସେମାନେ କରଣ ବୈଷ୍ଣବ। ଆମ ଗୋସାଇଁ ଘର ବଡ଼ପୁଅର ବାହାଘର ହେଲା। ଆମକୁ ଖାଇବାକୁ ନିମନ୍ତ୍ରଣ ହେଲା। ଶୁଣିଲୁ ଯେ ୬୪ପ୍ରକାର ଖାଦ୍ୟ ଖାଇବାକୁ ଦିଆହେବ। ଗୋଟାଏ ଭୀଷଣ କୌତୂହଳ। ଦେଖିବା ୬୪ ପ୍ରକାର କଅଣ ? ଶୀତ ନ ହେଲେ ବି ଥଣ୍ଡା ଥାଏ। ମାର୍ଗଶିର ମାସ, ରାତି ଆଠଟା ବେଳେ ସମସ୍ତେ ଗଲୁ ଗୋସାଇଁ ଘରକୁ। ବିରାଟ ସାମିଅନା ଟଙ୍ଗା ହୋଇଛି। ନିମନ୍ତ୍ରଣ ପେଟ୍ରୋମାକ୍ସ ଲାଇଟ୍, ଗ୍ୟାସ୍ ଲାଇଟ୍ ଜଳୁଛି। ମୁରବିମାନେ ଗୋଟିଏ ଆଡ଼େ। ଆମେ ପିଲାଏ ଗୋଟାଏ ପାଖରେ ଚୁପ୍‌ଚାପ୍ ବସିଥାଉ। ଏମିତି ବେଳେ ଗୋସାଇଁ ଆସିଲେ। ସମସ୍ତେ ଉଠିପଡ଼ି ନମସ୍କାର



Digitized by srujanika@gmail.com

କଲେ । ଧୋତି, କାନ୍ଧରେ ଚାଦର, ମୁଣ୍ଡରେ ରାମାନନ୍ଦି ଚିତା । ହସି ହସି ସମସ୍ତଙ୍କୁ ବସିବାପାଇଁ କହି ନିଜେ ମଧ ବସିଲେ । ନାନାଦି କଥାବାର୍ତ୍ତା ଚାଲିବା ସମୟରେ ୬୪ପ୍ରକାର ଖାଦ୍ୟ କଥା ପଡ଼ିଲା । ସେ କହିଲେ "ଆମ ଓଡ଼ିଆମାନେ ନିରାମିଷ ଉପରେ ବହୁପ୍ରକାର ରାନ୍ଧଣା ଜାଣନ୍ତି । ଯାହାକି ଅନ୍ୟ ଜାତିରେ ନାହିଁ । ଆଜି ଅବଶ୍ୟ ଖାଲି ତରକାରି ନୁହେଁ ପିଠା ପଣା ମଧ ଉକ୍ତ ୬୪ ପ୍ରକାର ମଧରେ ଅଛି ।" ସେ ଚେଷ୍ଟା କରିଛନ୍ତି ୬୪ ପ୍ରକାରପାଇଁ, କହି ଉପସ୍ଥିତ ନିମନ୍ତ୍ରିତଙ୍କୁ ଠା'ଜାଗାକୁ ଡାକିଲେ । ସମସ୍ତେ ହାତ ମୁହଁ ଧୋଇ ଆସନରେ ବସିଗଲୁ । ମୁରବିମାନେ ବୟସ ଓ ସମ୍ମାନ ଅନୁଯାୟୀ ବସିଲେ । ତା'ପରେ ଟୋକାମାନେ ବସିଲେ । ମୋତେ କିନ୍ତୁ ଆମ ଶରତ ଭାଇ ତାଙ୍କ ନିକଟରେ ମୋର ଅନିଚ୍ଛା ସତ୍ତ୍ୱେ ବସାଇଲେ । କାଳେ କିଛି ଗୋଳମାଳ କରିବି ଏହି ଆଶଙ୍କାରେ । ପ୍ରଥମେ ଜଣେ ପାଣି ଆଣି ଖାଇବା ଜାଗାରେ ଛିଞ୍ଚି ଦେଇଗଲା । ତା'ପରେ ଆସିଲା ଖଲି, ପରେ ପରେ ଦୁଇ/ତିନିଜଣ ଲୋକ ଡାଲା ଧରି ତହିଁରେ ଥିବା କଦଳୀ ପତ୍ରରେ ନାନା ପ୍ରକାର କଟା ହୋଇଥିବା ତିନିଇଞ୍ଚ ଗୋଲାଇର ପତ୍ର ତିନି ପ୍ରସ୍ତ କରି ଦେଇଗଲେ । ସେ କଟା ପତ୍ରକୁ ଦେଖି ମୋ ଚକ୍ଷୁ ସ୍ଥିର । ତରକାରି ଆସିଲା (ଝୋଳ ନୁହେଁ ସବୁ ଶୁଖିଲା) ପ୍ରତ୍ୟେକ ତରକାରି ଗୋଟିଏ ୩ଇଞ୍ଚର ପତ୍ରରେ କି କି ତରକାରି ତହିଁର ପ୍ରକାର ଯାହା ମନେ ଅଛି ଲେଖୁଛି । ଭଜାପରି ରନ୍ଧା ହୋଇଥାଏ ୧-ବାଇଗଣ, ୨-ବୋଇତିଆଳୁ, ୩-କଖାରୁ, ୪-ସାରୁ, ୫-କଦଳୀ, ୬-ଆଳୁ, ୭-ଓଉ, ୮-ଭେଣ୍ଡି, ୯-ବନ୍ଧାକୋବି, ୧୦-ଫୁଲକୋବି, ୧୧-ଓଲ, ୧୨-ଜହ୍ନି, ୧୩-ପୋଟଳ ଏହିପରି ପ୍ରତି ପରିବା ସ୍ୱତନ୍ତ୍ର ରୂପେ । ତା'ପରେ ପାଇଗଣ+ବୋଇତିଆଳୁ+କଖାରୁ+ସାରୁ ଏହିପରି ପରିବା ମିଶ୍ରଣ ଘାଣ୍ଟ ପରି । ପୁଣି ସେହି ମିଶ୍ରଣର ବିଭିନ୍ନ ରନ୍ଧା ପ୍ରକାର; ଯଥା-ରାଗ, ଖଟା, ବେସର, ଖଟାମିଠା, ଭଜା ଯା ଛଡ଼ା ପଲାଉ, କାନିକା ଡାଲି ବିଭିନ୍ନ ପ୍ରକାର । ଭୁଲିଗଲି ଉପରୋକ୍ତ ତରକାରି ଛୋଟ ଚାମଚରେ ଏକ ଚାମୁଚ୍ ଲେଖାଏଁ ଭାତମାନଙ୍କ ମଧରୁ କେବଳ ଅରୁଆ ଉଷୁନା ଭାତ ବଡ଼ ଚାମୁଚ୍‌ରେ ଏକ ଚାମୁଚ୍ କରି ଦିଆ ହେଉଥାଏ । ବାକି ସବୁ ଛୋଟ ଚାମୁଚରେ ଚାମୁଚାଏ ଲେଖା । ଡାଲି-ହରଡ଼, ମୁଗ, କୋଳଥ, ଖେସାରି, ମସୁର, ବୁଟ, ତହିଁପରେ ସେ ଡାଲିର ମିଶ୍ରଣ ଡାଲି, ତହିଁରେ ପୁଣି ବିଭିନ୍ନ ଡାଲି ଖଟା ଦିଆ ହୋଇ ଓ ଅନ୍ୟ ପ୍ରକାର । ଚଟଣି-ପୋଦନା, ଧଣିଆଁପତ୍ର, ଭେରଶୁଙ୍ଗା ପତ୍ର, ଜହ୍ନି ଚୋପା, ଆଳୁଚୋପା, ବୋଇତାଳୁ ଚୋପା, ଆହୁରି ଥିଲା । ବାଇଗଣ ଭରତା, ବୋଇତିଆଳୁ ପୋଡ଼ାଭରତା, ଆଳୁ ଭରତା ଏହିପରି । ଏ ସବୁ ଦିଆ ଚାଲିଥାଏ, ଶୀତଦିନ, ସବୁ ଥଣ୍ଡା, ଏଣେ ପେଟରେ ଭୋକ, କିନ୍ତୁ ଖାଇବାର ଉପାୟ ନାହିଁ ବଢ଼ା ସରୁ ନାହିଁ । ମୁରବି ଯେ, ସେ ପ୍ରଥମେ ନ ଖାଇଲେ କେହି ଖାଇ ପାରିବେ ନାହିଁ । ଯେଉଁ ଦୁଃଖ । ଥରେ ଦୁଇଥର ଖାଇଦେବାପାଇଁ ହାତ ବଢ଼ାଇଲାବେଳକୁ ଶରତ ଭାଇଙ୍କ ଧମକ... । ତା'ପରେ ଆସିଲା ମିଷ୍ଟାନ୍ନ । ଯଥା-ଖଣ୍ଡିଏ ତିନିଇଞ୍ଚ ଲୁଚିର ଅଧା



Digitized by srujanika@gmail.com

ମାଲପୁଆ ଏକ ଚତୁର୍ଥାଂଶ, କାକରାରୁ ୧/୪, ଆରିସାରୁ ୧/୨, ଚକୁଳି ୧, ଚିତଉ ୧/୨, ଲଡୁର ୧/୪, ବୁନ୍ଦିଆରୁ ୧ଚାମୁଚ, ରସଗୋଲା ୧/୨, ପାଲୁଅ ଲଡୁ ଛୋଟ ୧, ଜିଲାପିର ୧/ ୨, ଖିରି ୧ଚାମୁଚ, ପାଚିଲା କଦଳୀ ୧/୪ ଇତ୍ୟାଦି ଇତ୍ୟାଦି। ଗୋସେଇଁ ମହାପ୍ରଭୁ ତେଣେ ଠିଆ ହୋଇ ୧,୨,୩,୪ ପ୍ରକାରମାନ ଗଣୁଥାଆନ୍ତି। ଲୁଣ ଲଙ୍କାକୁ ମିଶାଇ ୬୪ପ୍ରକାରର ହେଲା। ତା'ପରେ ଖାଇବା ଆରମ୍ଭ ହେଲା। ବଡ଼ଠାରୁ ଆରମ୍ଭ କରି ସମସ୍ତେ ଏ ପତ୍ର ସେ ପତ୍ର ଜିନିଷ ଖାଇବାକୁ ଲାଗିଲେ। ମୁଁ ସବୁ ଜିନିଷ ବଡ଼ ଖଲିରେ ମିଶାଇ ଦେଇ ଖାଇବାକୁ ଆରମ୍ଭ କଲି। ଗୋସେଇଁ କହିଲେ ''ସାରିଲ ସାରିଲ ସ୍ୱାଦୁ ପାଇବ କେମିତି ? ସବୁ ଥର ଥର କରି ଖାଇଲେ ସିନା ସ୍ୱାଦୁ ଜାଣିଥାନ୍ତ।'' ମୁଁ କହିଲି ''ସବୁ ତ ପେଟରେ ଏକାଠି ହେବ, ଏଣୁ ଏକାଠି କରି ଖାଇଦେବା ଭଲ। ପରଶାପାଇଁ ଘଣ୍ଟାଏ ଗଲା, ଗୋଟେ ଗୋଟେ ଖାଇଲେ ଖାଇବାପାଇଁ ପୁଣି ଘଣ୍ଟାଏ।'' ମୋ କଥା ଶୁଣି ପିଲାଏ ଟୋକାଏ ହସିଲେ। କିନ୍ତୁ ମୁରବିମାନେ ଟିକିଏ ଖପା ହୋଇଗଲେ। ଖାଇ ସାରିବା ପରେ ଆସୁ ଆସୁ ବାଟରେ ମୋତେ ଟିକିଏ ଗାଳି ଶୁଣିବାକୁ ହେଲା। ସମାଜରେ ବସି ଖାଇବାକୁ ହେଲେ ଧୀରସ୍ଥିର ହୋଇ ନୀତି ନିୟମ ମୁତାବକ ଖାଇବାକୁ ହେବ। ସମସ୍ତେ ଖାଉଥିବା ବେଳେ କେହି ହଠାତ୍ ଖିଆସାରି ହାତ ଉଠାଇ ବସିବ ନାହିଁ। ସେଟା ଅଭଦ୍ରତା, ଖାଅ ନ ଖାଅ ଖଲିରେ ହାତ ଥିବ। ମଝିରେ ଉଠିଯିବା ତ କଳ୍ପନା ବାହାର। କିନ୍ତୁ ଆଜିକାଲି ବସିଲା ମାତ୍ରେ ହଠାତ୍ ଉଠି ଯାଉଛନ୍ତି ହୋଟେଲ ଭଳିଆ। କିନ୍ତୁ ସମାଜରେ ବା ନିଜ ଘରେ ସମସ୍ତେ ଏକ ସଙ୍ଗେ ଖାଉଥିବା ବେଳେ ଏପରି ବ୍ୟବହାର ଅଶୋଭନୀୟ। ଏ ଗୋଟାଏ ଅଭିଜ୍ଞତା ଗଲା। ବିବାହ ଆଦି କାମ କାର୍ଯ୍ୟରେ ବନ୍ଧୁ କୁଟୁମ୍ବମାନଙ୍କୁ ନିମନ୍ତ୍ରଣ ହୁଏ ଏବଂ ସେତେବେଳର ପ୍ରଥା ଯେ ନିମନ୍ତ୍ରଣ ରକ୍ଷା କରିବାକୁ ବାଧ।

ପରଦିନ ଶୀଘ୍ର ସମୁଦ୍ର କୂଳରୁ ଉଠି ବସାକୁ ଆସିଲି। ସେହିଦିନ ସନ୍ଧ୍ୟାବେଳେ ଝିଅକୁ ନେଇ ଘରକୁ ଆସିବା କଥା। ତେଣୁ ପୁରୀଠାରୁ ବିଦାୟ ନେଲି। ସେଦିନ ରାତିରେ ଜ୍ୱାଇଁ ଆଣି ପୁରୀ ହାଓ୍ୱାଡ଼ା ଏକ୍ସପ୍ରେସ୍‌ରେ ବସାଇ ଦେଇଗଲେ। ଆମେ ଯେଉଁ ଡବାରେ ଥାଉ ସେହି ଡବାରେ ବହୁ ବଙ୍ଗାଳୀ ପରିବାର ମଧ୍ୟ ବସିଥାନ୍ତି। ପୁରୀରୁ ଗାଡ଼ି ଛାଡ଼ିଲା ପରେ ଲକ୍ଷ୍ୟ କଲି ଯେ ଆମେ ଯେଉଁ ସିଟ୍‌ରେ ବସିଥାଉ ତା'ର ଠିକ୍ ସାମନାକୁ ଦୁଇଜଣ ଭଦ୍ରଲୋକ ବସିଥାନ୍ତି। ବୟସ ସେମାନଙ୍କର ୪୦/୪୫ ଭିତରେ ହେବ ବୋଲି ଅନୁମାନ କଲି। ଦୁଇ ଭାଇ ସେମାନେ। ରାତି ନଅଟା ହେବ। ସାନଭାଇ ଟିଫିନ୍ କେରିଅର ବାହାର କରି ବଡ଼ଭାଇଙ୍କୁ ଗୋଟିଏ ପ୍ଲେଟ୍‌ରେ ଖାଇବାକୁ ଦେଲେ। ବଡ଼ଭାଇ ସାନକୁ ମଧ୍ୟ ଖାଇବାପାଇଁ ଡାକିଲେ। ସାନଭାଇ କହିଲେ ସେ ପରେ ଖାଇବେ। କିନ୍ତୁ ବଡ଼ଭାଇ ସାନର ହାତଧରି ଜୋର୍ କରି ସାଥିରେ ଖୁଆଇଲେ। ଦୁଇ ଭାଇଙ୍କ ମଧ୍ୟରେ ଖୁବ୍ ନିବିଡ଼ ସମ୍ବନ୍ଧ ଦେଖି ମୋ ମନଟା ଖୁସି ହୋଇଗଲା। ମୋର ବାବା,



Digitized by srujanika@gmail.com

ବଡ଼ବାବାଙ୍କ କଥା ମନେ ପଡ଼ିଗଲା । ସେମାନେ ଥିଲେ ପାଞ୍ଚ ଭାଇ । କିନ୍ତୁ ପ୍ରତ୍ୟେକେ ପ୍ରତ୍ୟେକଙ୍କୁ ଭାରି ଭଲ ପାଉଥିଲେ । ବଡ଼ଭାଇ P. W. D. S. D. O. ଥିଲେ । ତାଙ୍କ ତଳ ଭାଇ ବାମନଘାଟି ବିହାର ବହଳଦାରେ ଥିବା ପ୍ରଥମ କଚେରିରେ ମୋକ୍ତାର । ତାଙ୍କ ତଳଭାଇ ଓଡ଼ିଶା ସରକାରରେ ଡାକ୍ତର । ତାଙ୍କ ତଳଭାଇ ମୋ ବାବା କରଞ୍ଜିଆରେ ମୋକ୍ତାର ଥିଲେ । ଆମର ମହାଜନି, ଦୋକାନ ଆଦି କାରବାର ମଧ୍ୟ ଚାଲିଥିଲା । ସବା ସାନଭାଇ ମଧ୍ୟପ୍ରଦେଶ ବସ୍ତର ରାଜ୍ୟରେ ଡାକ୍ତର ଥିଲେ । ଏମାନଙ୍କ ଏକ ମନ ଏକ ପ୍ରାଣ । ସମସ୍ତେ ମୋ ବାବାଙ୍କୁ ଭାରି ଖାତିର କରୁଥିଲେ । ସବୁ କଥାରେ ତାଙ୍କର ନିଷ୍ପତ୍ତି ରହୁଥିଲା । ସେମାନଙ୍କର ପ୍ରେମର ଗୋଟିଏ ନିଦର୍ଶନ କହିବି ।

ମୋ ଦ୍ୱିତୀୟ ଭଉଣୀର ବିବାହପାଇଁ ଆମକୁ ନେଇ ବାବା ଭଦ୍ରଖ ଯାଇଥାନ୍ତି । ସବୁ ଭାଇ ଏକାଠି ହୋଇଥାନ୍ତି । ସେତେବେଳେ ଭାଇମାନଙ୍କର ବୟସ ୪୦/୫୦ ଭିତରେ । ଦିନେ କଥାବାର୍ତ୍ତା ହେଉ ହେଉ ମୋ ସାନ ବଡ଼ବାବା କଅଣ ଗୋଟାଏ ଅଖାଡୁଆ କଥା କହିବାରୁ ବଡ଼ବାବା ତାଙ୍କୁ ଗୋଟାଏ ଚାପୁଡ଼ା ମାରିଦେଲେ । ଏ ବୟସରେ ବଡ଼ଭାଇ ସାନଭାଇକୁ ମାରିବା ଦେଖି ଆମେ ଆଶ୍ଚର୍ଯ୍ୟ । ଘଟଣା ସେମାନଙ୍କର ଖାଇବାର ୧୫/୨୦ମିନିଟ୍ ପୂର୍ବରୁ ଘଟିଥିଲା । ଖାଇବା ପୂର୍ବରୁ ପାଞ୍ଚଭାଇଙ୍କପାଇଁ ଗୋଟିଏ ଜାଗାରେ ଭାତ ବଢ଼ାହେଲା । ସମସ୍ତେ ସାଥିରେ ଖାଇବେ । ମାଡ଼ଖାଇ ସାନ ବଡ଼ବାବା ଗୋଟେ ଘରେ ଶୋଇ କାନ୍ଦୁ ଥାଆନ୍ତି । ବଡ଼ବାବା ଅନ୍ୟମାନଙ୍କୁ ଖାଇବାପାଇଁ ବସିବାକୁ କହିବାରୁ ବାବା କହିଲେ ସାନଭାଇ ନ ଆସିଲେ ଖାଇବେ ନାହିଁ। ଏଣୁ ବଡ଼ବାବା ''କୁଆଡ଼େ ଗଲା ସେ'' କହି ସାନ ବଡ଼ବାବା କାନ୍ଦୁଥିବା ଘରକୁ ପଶି ଆସି କହିଲେ,''ଆ, ଆ, ମୋ ଭାଇଟାପରା, ଆ, ଖାଇବା ।'' ଏ କଥା ଶୁଣି ସାନଙ୍କ କାନ୍ଦ ବଢ଼ିଉଠିଲା । ବଡ଼ବାବା ତାଙ୍କୁ ବିଛଣାରୁ ଟାଣି ଉଠାଇ ଆଣିଲେ। ଘୋଷାରିଲା ପରି ଆଣି କୋଳରେ ବସାଇ ମୁହଁ ପୋଛି ଦେଇ ଗୁଣ୍ଡାଏ ଭାତ ଖୁଆଇ ଦେଲେ । ମୁଁ ଏ କଥା ମୂଳରୁ ଶେଷ ପର୍ଯ୍ୟନ୍ତ ଦେଖୁଥାଏ । କୋଳରେ ବସାଇ ଭାତ ଖୁଆଇବା ଦେଖି ମୁଁ ଖେଁ ଖେଁ କରି ହସିଦେଲି । ଯାଏ କୁଆଡ଼େ ! ଭାଇକୁ କୋଳରୁ ଖସାଇ ଦେଇ ମୋ ଉପରକୁ ଚିହିଁକି ଉଠିଲେ । ମୁଁ ଦୌଡ଼ି ପଳାଇଲି । ଏ ଘଟଣା ବେଳକୁ ସେମାନେ ନାତି ନାତୁଣି ଦେଖିଲେଣି ।ତଥାପି ବଡ଼ଭାଇ ସାନଭାଇକୁ ମାରୁଛନ୍ତି । ସାନଭାଇ କାନ୍ଦୁଚନ୍ତି । ବଡ଼ଭାଇ କୋଳରେ ବସାଇ ଖୁଆଉଛନ୍ତି । କେତେ ସେମାନେ ପରସ୍ପରକୁ ଭଲପାଉଥିଲେ ଏଇଥିରୁ ଅନୁମେୟ । ବଡ଼ବାବା ମରିଯିବାପରେ ଭାଇମାନଙ୍କର କି କାନ୍ଦଣା । ମୋ ବାବା ମରିଗଲାପରେ ଡାକ୍ତର ବଡ଼ବାବା ଘର ପିଣ୍ଡାରେ ବସିଥାଆନ୍ତି ଓ ପ୍ରାୟ ପ୍ରତି ୧୫/୨୦ ମିନିଟ୍ ପରେ ''ହାୟ ନାରଣା ଚାଲିଗଲୁ'' ଏଇଆ ଘାରି ହେଉଥାନ୍ତି । ମୁଁ ଅନେକ ଭାଇମାନଙ୍କୁ ଦେଖିଛି, କିନ୍ତୁ ଏମାନଙ୍କ ମଧରେ ଥିବା ଭାଇ ପ୍ରେମ ବିରଳ । ବାସ୍ତବିକ ଭାଇଠାରୁ ବଡ଼ ବନ୍ଧୁ ନାହିଁ ଓ ବଡ଼ ଶତ୍ରୁ ମଧ ନାହିଁ ।



Digitized by srujanika@gmail.com

ଗାଡ଼ିରେ ବସି ବସି (ମୁଁ ଗାଡ଼ିରେ ଶୁଏ ନାହିଁ।) ମନ ଚାଲିଗଲା ମୋର ପିଲାଦିନର ଘଟଣାକୁ। ବାବାଙ୍କ ମୃତ୍ୟୁପରେ ଓ ମୋର ମୁଣ୍ଡ ଖରାପ ହୋଇଯିବାପରେ ମୋତେ ମୋ ବଡ଼ଭାଇ ଆଉ କଲେଜ ଯିବା କଥା ନ ଉଠାଇ ଘରକୁ ନେଇ ଆସିଲେ ଏଇଆ କହି ଯେ ବର୍ତ୍ତମାନ ତୋପାଇଁ ଟାଟାରେ ଚାକିରି ଠିକ୍ ହୋଇଛି। ଆଉ ପଢ଼ିବା ଦରକାର ନାହିଁ। ଭାଇଙ୍କୁ ଆମେ ସମସ୍ତେ ବଡ଼ ଭୟ କରୁଥିଲୁ। ତାଙ୍କର କଥା ଅମାନ୍ୟ କରିବାର ଶକ୍ତି କାହାରି ନ ଥିଲା। ଖାଲି ଆମେ ଭାଇ ବୋଲି କଥା ନାଇଁ, ଗାଁ ସାରା ସମସ୍ତେ ତାଙ୍କୁ ସମିହ କରୁଥିଲେ। ସେ ବଡ଼ ରାସଭାରି ଲୋକଥିଲେ। ତାଙ୍କୁ ଦେଖିଲେ ମନରେ ଶ୍ରଦ୍ଧା ଜଡ଼ିତ ଭୟ ଜାଗୁଥିଲା। ମୋତେ କିପରି ଭଦ୍ରଖ ପଠାଇ ଦେଲେ ତାହା ମୁଁ ପୂର୍ବରୁ ଲେଖିଛି। ମୋତେ କହିଥିଲେ ଭଦ୍ରଖର ଆମ ଭାଗ ବା ଜମି ବାଡ଼ି ଦେଖାଶୁଣା କରିବାକୁ। କିନ୍ତୁ ଭଦ୍ରଖ ଯାଇ ଦେଖିଲି ଯେ ଆମ ଇଜମାଲି ସମ୍ପତ୍ତିର ଭାଗ ବଣ୍ଟାଆରା କିଛି ହୋଇନି ବା କେଉଁଟା ଆମ ଭାଗ ମୁଁ ଜାଣିଲି ନାହିଁ। ଖାଲି ଗାଁରେ ରହି ଆଡ୍ଡା କରିବା ଛଡ଼ା ଆଉ କିଛି କାମ ନ ଥିଲା। ଫୁଟବଲ ହକି ଖେଳିବା, ଗାନ ବଜାଣ କରିବା ଛଡ଼ା ଆଉ କିଛି କାମ ନ ଥିଲା। ଭଦ୍ରଖରେ ପ୍ରାୟ ଅଧିକାଂଶ ଲୋକ ମୋତେ ଭୟ ଓ ଖାତିର କରୁଥିଲେ। ମଝିରେ ମଝିରେ କରଞ୍ଜିଆକୁ ଆସେ, କିଛିଦିନ ରହିବାପରେ ପୁଣି ପଠାଇ ଦିଅନ୍ତି। ସେଠାରେ ଧାନ ଭାଗ ମିଳେ। ଅନ୍ୟାନ୍ୟ ଖରଚପାଇଁ ଟଙ୍କା ମଧ କିଛି ଜମିବାଡ଼ିରୁ ଆଦାୟ ହୁଏ। ଆମର ଦୂରସମ୍ପର୍କୀୟ ଗୋଟିଏ ବିଧବା ନୂଆବୋଉ ରୋଷେଇ ଆଦି ସମସ୍ତ କରନ୍ତି। ଏହିପରି ଅବସ୍ଥାରେ ଦିନେ ମୁଁ ଘରକୁ ଆସିଥିବା ବେଳେ ଭାଇ ମୋତେ କହିଲେ ଯେ ମୁଁ ଭଦ୍ରଖରେ ସମ୍ପତ୍ତି ନେଇ ସେଠାରେ ରହିବି। ଆମ ଘରେ କରଞ୍ଜିଆରେ ଯେଉଁ ସମ୍ପତ୍ତି ଅଛି ସେଥିରେ ମୋର ଭାଗ ରହିବ ନାହିଁ। ସେଥିରେ ମୁଁ ରାଜି ହେଲିନି। ମୁଁ କହିଥିଲି ଭଦ୍ରଖରେ ମୁଁ ରହିବି, ଜମି ବାଡ଼ି ଦେଖାଶୁଣା କରିବି, ସେଥିରେ ସମସ୍ତଙ୍କ ଭାଗ ରହିବ, ଆଉ ଗାଁରେ ମଧ ମୋର ଭାଗ ରହିବ। କିନ୍ତୁ ଭାଇ ରାଜି ହେଲେ ନାହିଁ। ମୁଁ ମଧ ରାଜି ନ ହୋଇ ଭଦ୍ରଖରେ ମିଛଟାରେ ବସି ନ ରହି କରଞ୍ଜିଆ ଚାଲି ଆସିଲି। ପରବର୍ତ୍ତୀ ସମୟରେ (ବିଶେଷକରି ବାବାଙ୍କ ମୃତ୍ୟୁପରେ) ମୋ ଜୀବନର ପଥରେ ବିଭିନ୍ନ ପ୍ରକାର ବାଧାବନ୍ଧନ ଆସି ମତେ ବାଧ କରିଥିଲା କରଞ୍ଜିଆରେ ରହିବାପାଇଁ। ବାବାଙ୍କ ଅନୁପସ୍ଥିତିପାଇଁ ମୁଁ ମୋର ଭବିଷ୍ୟତ ବିଷୟରେ କିଛି ଚିନ୍ତା କରି ନ ଥିଲି। ତେବେ ମୋ ଭିତରେ ଅନ୍ଧବିଶ୍ୱାସ, ଜାତିପ୍ରଥା ଓ ନାରୀଜାତି ପ୍ରତି ଥିବା କେତେକ ବାଧାବନ୍ଧନର ବିରୋଧ କରିବାର ଏକ ଶକ୍ତି ଜାଗ୍ରତ ହେଇଥିଲା। କରଞ୍ଜିଆରେ ଅଛୁଆଁ ବା ଛୋଟ ଜାତି ବୋଲାଉଥିବା ଲୋକଙ୍କର ବିପଦ ଆପଦ ସମୟରେ ଯାଇ ସାହାଯ୍ୟ କରିବା, ଅଛୁଆଁ ଲୋକଙ୍କର ଶବସତ୍କାର କରିବା, ଝିଅମାନଙ୍କର ପାଠ ପଢ଼ା ଓ ଗୀତ ଗାଇବା ପ୍ରତି ପ୍ରେରଣା ଓ ସାହାଯ୍ୟ କରିବା ନେଇ କାର୍ଯ୍ୟକଲି।



Digitized by srujanika@gmail.com

ଏସବୁ କାର୍ଯ୍ୟପାଇଁ ଯୁବକମାନଙ୍କୁ ନେଇ ଏକ ଦଳ କରିଥିଲି । ସାମାଜିକ ସଂସ୍କାରପାଇଁ ବିଭିନ୍ନ କାର୍ଯ୍ୟସହ ଏକ ଯାତ୍ରା ଦଳ କରି ବିଭିନ୍ନ ପ୍ରକାର ସାଂସ୍କୃତିକ କାର୍ଯ୍ୟକ୍ରମ କରୁଥିଲି ।

କରଞ୍ଜିଆକୁ ଫେରି ଖାଲି ବସିଥାଏ । କାମଦାମ କିଛି ନାହିଁ । ବାବାଙ୍କ ବହି ପଢ଼ିବାରେ ସଉକ ଥିଲା । ଧର୍ମଗ୍ରନ୍ଥଠାରୁ ଆରମ୍ଭ କରି ଡିଟେକ୍ଟିଭ୍ ଉପନ୍ୟାସ ଆଦି ବହୁତ ଥାଏ । ବଙ୍ଗଳା ବହି ବହୁତ ଥାଏ । ଇଂରାଜୀ ୧୦/୧୫ଖଣ୍ଡ ବହି-ଏ ସବୁ ପଢ଼ି ଦିନ କାଟେ । ହଠାତ୍ ଦିନେ ଭାଇଙ୍କର ଆଦେଶ ହେଲା ବାରିପଦା ଯାଇ ସେଠାରେ ଥିବା ପୂର୍ଣ୍ଣଚନ୍ଦ୍ର ଇଣ୍ଡଷ୍ଟ୍ରିଆଲ ଇନଷ୍ଟିଚ୍ୟୁଟ୍‌ରେ Weaving ଓ Dying training ନେବାପାଇଁ । ଆଦେଶ ଅବଜ୍ଞା କରିବାର କଥା ନାହିଁ । ଭାବିଲି Weaving Mill ଗୋଟେ ଆରମ୍ଭ କରିବା ପରା । ବାରିପଦା ଗଲି, ସେଠାରେ ଟ୍ରେନିଂ ଆରମ୍ଭ କଲି । ବର୍ତ୍ତମାନ ଯେଉଁଟା ପି. ଡବ୍ଲୁ. ଡି. ଡାକବଙ୍ଗଳା ସେଇ ଘର ପାଖଟା ଟ୍ରେନିଂ ସେଣ୍ଟର ଥାଏ । ପୂରା ନାମ ଟା ମନେ ନାହିଁ-"କଣ .....ବିଦ୍ୟାନ୍ତ," ଜାପାନ ଫେରନ୍ତା । ସେ ଥା'ନ୍ତି Superintendent । ବୁଣାବୁଣି ରଙ୍ଗ ବିଷୟରେ ଅସୀମ ଜ୍ଞାନ । ଆମର ହଷ୍ଟେଲ ହୋଇଥାଏ । ସେହି ହଷ୍ଟେଲରେ ଗୋରାଚାନ୍ଦ ପରମାଣିକ weaving instructor ଓ ନିତାଇ ବାବୁ ବୋଲି ଜଣେ Carpentry Instructor ରହନ୍ତି ଓ ଆମେ ଛାତ୍ର ହିସାବରେ ମୁଁ, ସୁରେନ୍ ଦାସ ଓ ନରହରି ଇତ୍ୟାଦି ତାଙ୍କ ସହ ଓ ଦୁଇଜଣ ପୂଝାରୀ ଚାକର ମିଶି ଆଠ ଜଣ ଥାଉ । ଦିନବେଳେ ଖାଇସାରି ଦଶଟାବେଳେ ଯାଉ ଟ୍ରେନିଂ ସେଣ୍ଟର, ତନ୍ତ ଦଶଟା ପଡ଼ିଥାଏ । ମଠା, ସୂତା ମଲବେରି ସିଲ୍କର ଶାଢ଼ି ବୁଣା ହୁଏ । ସିଲ୍କର ଯେଉଁ କନା ତିଆରି ହୁଏ ବର୍ତ୍ତମାନ ଏ ଦେଶରେ ତାହା ସ୍ୱପ୍ନ । ଟସରର ସୁଟ୍ କନା ମ୍ୟାଚିଙ୍ଗ ସୂତାରେ ବୁଣାହୁଏ । ଦେଖିବାକୁ ଠିକ୍ ଆଜିକାଲି Raw Silkପରି । ବିଦ୍ୟାନ୍ତ ସାହେବ ନାନା ପ୍ରକାର ଡିଜାଇନର ଶାଢ଼ିର ଧଡ଼ି ଦେଇ ଶାଢ଼ି କରାନ୍ତି । ଜଣେ ଜେଲ ଫେରନ୍ତା ଲୋକ ଖୁବ୍ ଭଲ ବୁଣୁଥାଏ । ସେ ଦରମାପାଇ ସେଠାରେ ତନ୍ତ ଚଳାଏ । ନରହରି ବୁଣିବାରେ ଫାଷ୍ଟ ହୁଏ ମୁଁ ସେକେଣ୍ଡ ହୁଏ । ଏହାଛଡ଼ା ମୁଁ ସବୁ କାମ ଟିକେ ଭଲ ଜାଣେ ବୋଲି ବିଦ୍ୟାନ୍ତ ମୋତେ ଆନ୍ତରିକ ଭଲ ପାଆନ୍ତି । ତାଙ୍କ ମନରେ କିନ୍ତୁ ଆଶଙ୍କା ଥାଏ କାଳେ କେଉଁଠି କିଛି ନଷ୍ଟ କରିଦେବି । କାରଣ ମୁଁ ସବୁଥିରେ ପରୀକ୍ଷା କରେ । ତାଙ୍କର ପ୍ରିୟ ଛାତ୍ର ସୁରେନ୍ ଦାସ । ତାକୁ ସେ ଡାକି ନେଇ Dying sectionରେ କାମ କରାନ୍ତି । ମୁଁ ଜବରଦସ୍ତ ଯାଇ ନିଜ ହାତରେ କିଛି କରିବାକୁ ବସିଲେ କାଳେ ସୂତା ରଙ୍ଗ ନଷ୍ଟ ହୋଇଯିବ ବୋଲି ବାରଣ କରନ୍ତି । କିନ୍ତୁ ମୁଁ ତାଙ୍କ କଥା ନ ମାନି କାମ କରେ ।

ଏହିପରି ଚାଲିଥାଏ । ଚାରିଟାବେଳେ ଛୁଟି । ବସାକୁ ଆସି ନିତ୍ୟକର୍ମ ସାରି ଗାଧୋଇ ପଡ଼େ । ସେ ସମୟରେ 'ଅଗରୁ ସୋପ' ବୋଲି ଗୋଟାଏ ସାବୁନ୍ ମିଳୁଥାଏ । ଉକ୍ତ ସାବୁନ୍ ମାଖି ଗାଧୋଇଲେ ୨୪ ଘଣ୍ଟାପାଇଁ ଦେହର ସୁବାସ ଥାଏ । ଗାଧୋଇସାରି ପ୍ରଥମେ ଯାଏ ସୁଧାମୟ



Digitized by srujanika@gmail.com

ମଜୁମଦାର ଘରକୁ । ସେ ମୋ Class mate ଥିଲା । ସେଠାରେ କିଛି ସମୟ ବସି ଯାଏ କ୍ଲବୁଲି ଲାଇବ୍ରେରୀ । ଆଜି ସୁଧାମୟ ମଜୁମଦାର କଥା ବହୁତ ମନେ ପଡୁଛି । ଏମିତି ଫାଜିଲ୍ ଓ ଦୁଷ୍ଟ ଥିଲା ଯେ ତାହା ସହିତ କଥା କହିବା କଷ୍ଟକର । ସେ ପରେ ପୋଲିସ୍ ସବ୍‌ଇନ୍ସପେକ୍ଟର ଚାକିରି କଲା । ତା'ପରେ ପୋଲିସ୍ ଇନ୍ସପେକ୍ଟର ହେଲା ଶେଷ ଅବସ୍ଥାରେ ବାରିପଦାରେ P.P. ଥିଲା । ସେଠାରେ ଥିବା ସମୟରେ ମଝିରେ ମଝିରେ କେସ୍ ସଂକ୍ରାନ୍ତରେ କରଞ୍ଜିଆ ଆସେ । ଦେଖାହୁଏ । କେତେ ଆନନ୍ଦ ଲାଗେ । ଶେଷ ଆଡ଼କୁ ଡାଏବେଟିସ୍‌ରେ ଭୋଗୁଥିଲା । ରିଟାୟାର ପରେ, ମୋ ପୁଅ ଜାପାନି ବାରିପଦାରେ ଥିବା ସମୟରେ ମୁଁ ପ୍ରାୟ ବାରିପଦା ଯାଏ ଓ ପ୍ରତ୍ୟେକ ସନ୍ଧ୍ୟାରେ ଦୁଇଜଣ ଯାକ ବଜାରକୁ ଯାଉ । ଶେଷ ଆଡ଼କୁ ବହୁତ ଦୁର୍ବଳ ହୋଇଯାଇଥିଲା । ତାର ପୁଅ କରଞ୍ଜିଆରେ ସପ୍ଲାଇ ବିଭାଗରେ ଇନସ୍‌ପେକ୍ଟର ଥିଲା । ମଝିରେ ମୁଁ କରଞ୍ଜିଆରେ ଥିବା ସମୟରେ ବାପା ଦେହ ଖରାପ ଖବର ପାଇ ସେ ବାରିପଦା ଛୁଟିରେ ଗଲା ଓ କିଛି ଦିନ ପରେ ଖବର ଦେଲା ସୁଧାମୟ ଚାଲିଗଲା । ମୁଁ ଏ ଖବର ପାଇ ମ୍ରିୟମାଣ ହୋଇପଡ଼ିଲି । ପିଲାଦିନୁ ଶେଷ ପର୍ଯ୍ୟନ୍ତ ମୋର ଥିଲା ସେ ଗୋଟିଏ ବନ୍ଧୁ । ଘନିଷ୍ଠ ବନ୍ଧୁ ।

ବାରିପଦା କ୍ଲବୁଲି ଲାଇବ୍ରେରୀରେ ମେମ୍ବର ହୋଇଥାଏ । ପ୍ରଥମେ ଖଣ୍ଡିଏ ଲେଖା ବହି ଦିଅନ୍ତି । ରାତିରେ ପଢ଼ି ସାରିଦିଏ । ପୁଣି ପର ସନ୍ଧ୍ୟାକୁ ଚାହିଁ ବସିଥାଏ । ଦିନେ ଲାଇବ୍ରେରୀଆନ୍‌କୁ ଅନୁରୋଧକଲି ଦୁଇ ଖଣ୍ଡ କରି ବହି ଦେବାପାଇଁ । ସେ ସମ୍ମତ ହୋଇ ଦୁଇ ଖଣ୍ଡ କରି ବହିଦେଲେ । ଲାଇବ୍ରେରୀରେ ଥିବା ସମସ୍ତ ବଙ୍ଗଳା ଓ ଓଡ଼ିଆ ବହି ମୁଁ ପଢ଼ିଛି । ଦୁଇ ଖଣ୍ଡ ବହି ଆଣିବାରୁ ଦିନରେ ମଧ ପଢ଼ିଦିଏ । ଟ୍ରେନିଂ କ୍ଲାସ୍‌କୁ ବହି ନେଇ ଯାଏ ।ତନ୍ତ ଉପରେ ବହି ରଖି ପଢୁଥାଏ ଓ ବୁଣା ଚାଲିଥାଏ । ଦୁର୍ଭାଗ୍ୟକୁ ଦିନେ ଏମିତି ବୁଣୁ ବୁଣୁ ଗୋଟିଏ ସୂତା ଛିଡ଼ିଯାଇଛି । ମୋତେ ଜଣା ନାହିଁ । ପ୍ରାୟ ତିନିଇଞ୍ଚ ପର୍ଯ୍ୟନ୍ତ ଗୋଟିଏ ଜାଗାରେ ଦରବୁଣା ହୋଇଯାଇଥାଏ । ଠିକ୍ ସେତିକିବେଳେ ବିଦ୍ୟାନ୍ତ ଆସି ଏ ଅବସ୍ଥା ଦେଖି ଯେଉଁ ପାଟି କଲେ ତାହା ଗୋଟାଏ ମନେ ରହିବା ଭଳି ଘଟଣା । ଗାଳି ତ ଦେଲେ, ମୋତେ ତନ୍ତ ଛାଡ଼ିଦେବାପାଇଁ କହିଲେ । ମୁଁ ତନ୍ତରୁ ନ ଉଠି କହିଲି ମୁଁ ଠିକ୍ କରିନେବି । ସେ ଇନ୍‌ଷ୍ଟ୍ରକ୍‌ଟର୍‌ଙ୍କୁ କହିଲେ ମୋତେ ସାହାଯ୍ୟ କରିବାପାଇଁ । କିନ୍ତୁ ମୁଁ ତାଙ୍କ ସାହାଯ୍ୟ ନ ନେଇ ବାଗେଇ ଦେଲି । ବିଦ୍ୟାନ୍ତ ଖୁସି ହେଲେ । କିନ୍ତୁ ବହି ନ ପଢ଼ିବାପାଇଁ କହିଗଲେ । ଯାହାହେଉ ଲାଇବ୍ରେରୀର ସବୁ ବହି (ବଙ୍ଗଳା, ଓଡ଼ିଆ) ପଢ଼ି ମୋର ବହୁତ ଶିକ୍ଷା ହେଲା ।

ହଁ ଲାଇବ୍ରେରୀରୁ ବହି ନେଇଯାଏ ଟେଲିଫୋନ୍ ଏକ୍ସଚେଞ୍ଜକୁ । ସେ ସମୟରେ ବର୍ତ୍ତମାନ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟରଙ୍କର ଅଫିସର ଉପରେ ଥାଏ ଟେଲିଫୋନ୍ ଏକ୍ସଚେଞ୍ଜ । ସେଠାରେ



Digitized by srujanika@gmail.com

ସଦାନନ୍ଦ ଦାସ (ପୁଟୁ), ବ୍ରଜ ଗୋପାଳ ବୋଷ ଓ ବିମଳ ଡାକ୍ତରଙ୍କ ଭାଇ ତିନିଜଣ ଅପରେଟର କାମ କରୁଥିଲେ । ସମସ୍ତଙ୍କ ମଧ୍ୟରୁ ପୁଟୁ ସହ ମୋର ବନ୍ଧୁତା ବେଶୀ ଥାଏ । ସେଠାରେ ବସି ୮/୩୦ ରାତି ପର୍ଯ୍ୟନ୍ତ ଗପ ଚାଲେ । ତା'ପରେ ହଷ୍ଟେଲକୁ ଫେରି ଖାଇ ପିଇସାରି ବହିପଢ଼ା ଓ ନିଦ୍ରା । ଦିନକର କଥା, ସେଦିନ ରବିବାର ଥାଏ । ମୁଁ ଦିନ ଦୁଇଟା ବେଳେ ଯାଇଥାଏ ଏକ୍ସଚେଞ୍ଜକୁ । ପୁଟୁ ଓ ବ୍ରଜ ଗୋପାଳ ସହ ଉପରେ ବସି ଆଡ୍ଡା ଚାଲିଥାଏ । ମୋ ସାଇକେଲଟି ସବୁଦିନପରି ତଳେ ରଖି ଦେଇଥାଏ । ପ୍ରାୟ ତିନିଟା ବେଳକୁ ସେଠାରୁ ତଳକୁ ଓହ୍ଲାଇ ଦେଖେ ତ ମୋ ସାଇକେଲ ନାହିଁ । ତଳେ ଅଫିସରେ ଯେ ଲୋକଥାଏ ତା'ର କିଛି ଖବର ପାଇଲୁ ନାହିଁ । ଏଆଡ଼େ ସେଆଡ଼େ ଅନୁସନ୍ଧାନ କରି କିଛି ସନ୍ଧାନ ନ ପାଇବାରୁ ପୁଟୁ ଥାନାକୁ ଯାଇ କଥା ଜଣାଇ ଦେଲା । ମୁଁ ମନ ଦୁଃଖରେ ପ୍ରାୟ ଅଧଘଣ୍ଟା ସେଠାରେ ବସିଛି, ହଠାତ୍ ଥାନାରୁ ଖବର ଆସିଲା ଚୋର ଧରାପଡ଼ିଛି । ଯାଇ ଚିହ୍ନଟ କରିବାପାଇଁ ଡାକରା । ପୁଟୁ ମୁଁ ଥାନାକୁ ଗଲୁ । ଯାଇ ଦେଖିଲୁ ପୁଟୁର ସାନଭାଇ ଥାନାରେ ବସିଛି ଓ ମୋର ସାଇକେଲ ସେଠି ଅଛି । ଶୁଣିଲୁ ସେ ସାଇକେଲ ନେଇ ଯିବାବେଳେ କନେଷ୍ଟବଳ ତା'କୁ ଧରି ଆଣିଛି । ଆମେ ଥାନାବାବୁଙ୍କୁ କହିଲୁ ସାଇକେଲ ତ ମିଳିଲା । ସେ ତ ଚୋରି କରି ନାହିଁ, ଏଣୁ ତାକୁ ଛାଡ଼ି ଦିଅନ୍ତୁ । କିନ୍ତୁ ସେ ଆମ କଥା ନ ଶୁଣି ଚାର୍ଜ ସିଟ୍ ଦେଲେ । କଚେରିରେ ଧାର୍ଯ୍ୟ ତାରିଖ ଦିନ ମୋଠାରୁ ଓ ପୁଟୁର ସାନଭାଇର ଜମାନବନ୍ଦି ନେଇ ଆସାମୀକୁ ଖଲାସ କରିଦେଲେ ଓ ମୋତେ ସାଇକେଲ ଫେରାଇ ଦେବାପାଇଁ ହୁକୁମ କଲେ । ହୁକୁମ ସିନା ହେଲା, କିନ୍ତୁ ସାତ ଆଠ ଦିନ ଦୌଡ଼ି ଦୌଡ଼ି ସାଇକେଲ ପାଇ ନ ଥାଏ । ଥାନା ରାଇଟର ମୋତେ ନାନାଭାବେ ହଇରାଣ କରୁଥାଏ, ବୋଧହୁଏ କିଛି ପାଇବା ଆଶାରେ । ସେଦିନ ବିରକ୍ତ ହୋଇ ଯାଇ ଥାନା ଏସ୍.ଆଇ. ଙ୍କଠାରେ ଆପତ୍ତି କରିବାରୁ ସେ ସାଇକେଲଟି ଦିଆ କରାଇଲେ । ବାସ୍ତବିକ ଭଲ ହେଉ ବା ମନ୍ଦ ହେଉ ପୋଲିସ ସଂଶ୍ରବ ଏହିପରି ।

ତତ୍‌ସମୟରେ ବାରିପଦାରେ ବୈଷ୍ଣବ ଚରଣ ଦାସ ଏସ୍.ପି. ଥାଆନ୍ତି । ଆମେ ଥରେ ଥରେ ପୁଟୁ ଗୋଟାଏ ସାଇକେଲରେ, ସୁଧାମୟ ମଜୁମଦାର ଗୋଟାଏ ସାଇକେଲରେ ଓ ମୁଁ ଦୁଇ ସାଇକେଲ ମଝିରେ ଦୁଇ ସାଇକେଲ ଫୁଟ୍ ପିନ୍‌ରେ ଗୋଡ଼ ଦେଇ ଠିଆ ହୋଇ ତିନିଜଣ ଚାରିଆଡ଼େ ବୁଲୁ । ଦିନେ ଗୁଲୁରି ମାର୍କେଟ ଠାରେ ପୋଲିସ ଆମକୁ ଡବଲ ରାଇଡ଼ିଙ୍ଗ୍ ବୋଲି ଅଟକାଇ ଥାନାକୁ ନେବାପାଇଁ ବସିଲା । ସେ ସମୟରେ ବର୍ତ୍ତମାନ ଯେଉଁଟା ଗାର୍ଲ ସ୍କୁଲ ସେଇଟା ଏସ୍.ପି.ଙ୍କ କୋଠି ଥାଏ । ମୁଁ ଥାନାକୁ ନ ଯାଇ ପୋଲିସ୍ କୁ ବାଧ କଲି ଏସ୍.ପି.ଙ୍କ ଠାକୁ ଯିବାପାଇଁ । ସେ ଅନିଚ୍ଛା ସତ୍ତ୍ୱେ ଆମ ସହ ଗଲା । ଭିତରକୁ ଗଲାରୁ ଏସ୍.ପି. ଙ୍କୁ କହିଲି ଆଜ୍ଞା ଏ କନେଷ୍ଟବଳ ମିଛଟାରେ ଆମକୁ ଡବଲ ରାଇଡ଼ିଂରେ ଧରୁଛି । ଆମେ ଯେମିତି ସାଇକେଲରେ ବସିଥିଲୁ ସେମିତି



Digitized by srujanika@gmail.com

S. P.ଙ୍କ ଆଗରେ ଓହ୍ଲାଇବାରୁ ସେ ଦେଖି ପ୍ରଥମେ ଖୁବ୍ ହସିଲେ, ତା'ପରେ କନେଷ୍ଟବଲଙ୍କୁ କହିଲେ ଏଟା ଡବଲ ରାଇଡ଼ିଂ ନୁହେଁ ଛାଡ଼ିଦିଅ । ମୋତେ ଭିତରକୁ ଡାକି ଦି'ପଦ ଉପଦେଶ ସହ ସ୍ନେହଭରା ତାଗିଦ୍ ବି କଲେ । ଏହିପରି ନାନା ପ୍ରକାର ଆନନ୍ଦରେ ଟ୍ରେନିଂ ଶେଷ ହେଲା । ପରୀକ୍ଷା ମୁଁ ପାଶ୍ କଲି, ସାର୍ଟିଫିକେଟ୍ ମିଳିଲା । ତା'ପରେ ପୁଣି କରଞ୍ଜିଆ ଫେରି ଆସିଲି । Weaving Mill କଥା କହିଲି । ଭାଇ ନିରବ ରହୁଥାଆନ୍ତି, କିଛିଦିନ ପରେ ଗୋଟାଏ ତନ୍ତ ଆଣି ଏଠାକାର ତିନି/ଚାରିଜଣ ତନ୍ତୀଙ୍କୁ ଡାକି କିଛିଦିନ ବୁଣାବୁଣି ଶିଖାଇଲି ଓ ଏଠା ଶାମରାୟ ଠାକୁରଙ୍କର ଗୋଟାଏ ମେଳା ଘରେ କେତେକ ପିଲାଙ୍କୁ ନେଇ ସତରଞ୍ଜି, ଆସନ, ଗାଲିଚା ଆଦି ବୁଣିବା ଶିଖାଇବା ଆରମ୍ଭ କଲି । ତା'ପରେ ଭାଇଙ୍କ ଖେୟାଲ କଅଣ ହେଲା କେଜାଣି ମୋର ତନ୍ତକୁ ଆମର ବାଷଘର ଶୁକୁଳିକୁ ନେଇଗଲେ ଓ ସେ ତନ୍ତ ଓ ତହିଁର ସରଞ୍ଜାମ ସବୁ କୁଆଡ଼େ ଗଲା ।

ଏହିପରି ସମୟରେ ଦିନେ ମୁଁ ଘରୁ ବଜାରକୁ ଯାଉଥାଏ ତେଲିସାହି ଠାକୁର ଘରେ (ତାହା ଶମ୍ଭୁ ପ୍ରଧାନଙ୍କ ଘରର ଗୋଟିଏ ଅଂଶ) କେତେକ ଯୁବକ ଠୁଳ ହୋଇଥିଲେ । ସେମାନଙ୍କୁ ଦେଖି କହିଲି "ଗୋଟାଏ ଡ୍ରାମା କରିବା ।" ସେମାନେ ସତରେ ଖୋଜୁଥିଲେ ଜଣକୁ ବାଟ କଢ଼ାଇବାକୁ, ସମସ୍ତେ କହିଲେ "କରିବା, କିନ୍ତୁ ଆପଣ ଆମକୁ ସାହାଯ୍ୟ କରନ୍ତୁ ।" ମୁଁ ସମ୍ମତ ହେବାରୁ 'ସୁଦାମା' ନାଟକଟି କରିବାର ସ୍ଥିର ହେଲା । ଉକ୍ତ ନାଟକରେ ସର୍ବଶ୍ରୀ ମଧୁସୂଦନ ନନ୍ଦ, ମନମୋହନ କର, ଶଶିଭୂଷଣ ସାହୁ, ଆନନ୍ଦ ଚନ୍ଦ୍ର ସାହୁ, ମଦନଲାଲ ଅଗ୍ରୱାଲ, ଭୂପେନ୍ଦ୍ର ମହାନ୍ତି ଦାଶରଥି ପ୍ରଧାନ, କ୍ଷେତ୍ର ପରିଡ଼ା, ପ୍ରହ୍ଲାଦ ଦାସ, ଗିରୀଶ ଚନ୍ଦ୍ର କର, ଶୈଳେନ୍ଦ୍ର ସାହୁ ଓ ମାରୁୱାଡ଼ି ପଡ଼ାର ଅନେକ ଯୋଗ ଦେଇଥିଲେ । ମୁଁ ପିଲାମାନଙ୍କୁ ଭଲ ନାଟକଟିଏ ଶିଖାଇ ସେହି ବର୍ଷ ଦୋଳଯାତ୍ରାରେ ଦୋଳ ପଡ଼ିଆରେ କେବଳ ସାଧା ଓ ରଙ୍ଗିନ କନା ଟାଣି ଡ୍ରାମା କଲୁ । ସାଧାରଣଙ୍କ ଦ୍ୱାରା ଖୁବ୍ ଉତ୍ସାହ ପାଇଲୁ । ସେହି ବର୍ଷ ମାର୍କୋଣାରେ ଶ୍ରୀ ଗୌରାଙ୍ଗ ଚନ୍ଦ୍ର ଦାସ ତାଙ୍କ ଅପେରା ଦଳ ନେଇ ଆସିଥିଲେ । ତାଙ୍କ ସହ ସ୍ୱଦେଶୀ କବି ଶ୍ରୀ ବାଞ୍ଛାନିଧି ଦାଶ ମଧ ଥିଲେ । ମୁଁ ସେମାନଙ୍କର ଅପେରା ଦେଖି କିଛି ଜ୍ଞାନ ଆହରଣପାଇଁ ସେମାନେ ଏଠାରୁ ଗଲାବେଳେ ସେମାନଙ୍କ ସହ ଚାଲିଗଲି । ଘରେ ମାଆ ବ୍ୟତୀତ କେହି ବାଧା ଦେଇ ନ ଥିଲେ । ସେମାନଙ୍କ ସହ କିଛି ଦିନ ରହି ଡ୍ରାମା ସମ୍ବନ୍ଧରେ କିଛି ଜ୍ଞାନଲାଭ କରି ଫେରି ଆସିଲି କରଞ୍ଜିଆକୁ ଓ କରଞ୍ଜିଆର ନାଟକ ଯୁଗ ଆରମ୍ଭ କଲି । ସମସ୍ତ ଯୁବ ସମାଜ ମୋର ନେତୃତ୍ୱ ଗ୍ରହଣ କଲେ ।

ତତ୍‌ସମୟରେ ଏଠା ପିଲାଙ୍କ ଚିତ୍ତ ବିନୋଦନପାଇଁ କିଛି ନ ଥିଲା । ପ୍ରଥମେ ଫୁଟବଲ ଖେଳ, ସନ୍ଧ୍ୟାରେ କେରମ୍ ଆଦି ଖେଳ ଆରମ୍ଭ କଲୁ । ଏଠାରେ ସାଧାରଣ ପଡ଼ିଆ ନ ଥିବାରୁ ହାଇସ୍କୁଲ ପଡ଼ିଆରେ ପିଲାଙ୍କ ସହ ଖେଳୁଥାଉ । ବାହାର ପିଲାଙ୍କ ସଂଖ୍ୟା ବଢ଼ିବାରୁ ସ୍କୁଲପିଲାଙ୍କର ଖେଳରେ ବ୍ୟାଘାତ ହେଲା । ସେମାନେ ତାଙ୍କ ହେଡ୍‌ମାଷ୍ଟରଙ୍କୁ କହି ଆମ୍ଭମାନଙ୍କୁ ଆଉ ସ୍କୁଲ



Digitized by srujanika@gmail.com

ପଡ଼ିଆରେ ନ ଖେଳିବାପାଇଁ କହିଲେ । ଏଣୁ ଆମ୍ଭେମାନେ ବର୍ତ୍ତମାନ ଯେଉଁଟା ବ୍ଲକ୍ କଲୋନି ଅଛି, ଡାକବଙ୍ଗଳା ହତାଠାରୁ କରଞ୍ଜିଆ ପେଟ୍ରୋଲ ଟାଙ୍କି ପର୍ଯ୍ୟନ୍ତ ସମସ୍ତ ପଡ଼ିଆ ପଡ଼ିଥିଲା ସେହିଠାରେ ଖେଳ ପଡ଼ିଆ ତିଆରି କରି ଖେଳିବା ଆରମ୍ଭ କଲୁ । ନୂଆ ବଲ୍ କିଣିବା ଅସାଧ, ଏଣୁ ବାରିପଦା ହାଇସ୍କୁଲର ଖେଳ ପିଅନକୁ ପ୍ରତି ପୁରୁଣା ବଲ୍ ପିଛା ଆଠଅଣା ଦେଇ ମରାମତି କରି ଖେଳୁ । ମରାମତି କାମ ଆମେ ନିଜେ କରୁ । ଉକ୍ତ ମରାମତି କାର୍ଯ୍ୟରେ କ୍ଷେତ୍ରମୋହନ କର ମୋତେ ସାହାଯ୍ୟ କରନ୍ତି । ବଲ୍ ଯେପରି ସିଲାଇ ହୋଇଥାଏ ଠିକ୍ ସେହିପରି ସିଲାଇ କରି ମରାମତି କରୁ । ପରେ ଉକ୍ତ ସିଲାଇ କାର୍ଯ୍ୟ ସମସ୍ତ ଶ୍ରୀ ପୂର୍ଣ୍ଣଚନ୍ଦ୍ର ବାରିକ କରୁଥିଲେ । ସେ ବଲ୍‌ଟି ପୂରା ଖୋଲି, ପୁଣି ନୂଆକରି ସିଲାଇ କରି ପାରୁଥିଲେ । ବ୍ଲକ ନିକଟରେ ଯେଉଁ ପଡ଼ିଆ ଥିଲା ତହିଁରେ ବର୍ଷାଦିନେ ଠିକ୍ ମଝାମଝି ଗୋଟା ପାଣି ମାହାରିଆ ଚାଲୁଥିବାରୁ ଖେଳରେ ବହୁତ ଅସୁବିଧା ହେଉଥିଲା । ଅସୁବିଧା ହେବାରୁ ଗିରିମା ଗୋଡ଼ା ଯାହାକି ତତ୍‌ସମୟରେ ପଡ଼ିଆ ପଡ଼ିଥାଏ । (ଅମ୍ବିକା ଠାକୁରାଣୀ ମନ୍ଦିରଠାରୁ ସମସ୍ତ ପଡ଼ିଆ ପଡ଼ିଥାଏ ।) ସେହିଠାରେ ଫୁଟବଲ୍ ପଡ଼ିଆ କରି ଖେଳ ଆରମ୍ଭ ହେଲା । ତତ୍‌ସମୟରେ ଶ୍ରୀ ସୁଦର୍ଶନ ଦାସ, ବୃନ୍ଦାବନ ସାହୁ, ଦାଶରଥି ପ୍ରଧାନ, ସୂର୍ଯ୍ୟାନନ୍ଦ ବାରିକ, ସାରଙ୍ଗଧର ଦାସ, ଗୋକୁଳାନନ୍ଦ ସାହୁ, ନଟବର ସାହୁ ଓ ଅନ୍ୟାନ୍ୟ ପିଲାଏ ଖେଳୁଥିଲେ । କାଳକ୍ରମେ ସେମାନଙ୍କର ବୟସ ବଢ଼ିବାରୁ ଓ ସାନ ପିଲାଏ ଅଧିକ ସଂଖ୍ୟାରେ ଆସିବାରୁ ସେମାନେ ଖେଳ ଛାଡ଼ିଦେଇଥିଲେ । ମୁଁ କିନ୍ତୁ ସେହିପରି ଥାଏ । ଏଣୁ ନୂତନ ପିଲା ଖଲିଲୁର୍ ରହମନ୍, କିଶୋରଚନ୍ଦ୍ର ଦାସ ଅଧିକାରୀ,(ବୁଲିଆ) ଚିରଞ୍ଜିଲାଲ ଅଗ୍ରୱାଲ୍, ଶ୍ରୀକାନ୍ତ ଦାସ, ଲକ୍ଷ୍ମୀଧର ବେହେରା, ରାଧାଶ୍ୟାମ ନାଏକ, ଭୋଳାନାଥ ଦାସ, ହରେନ୍ଦ୍ରନାଥ ସାହୁ, ଗୋକୁଳ ସାହୁ, ପ୍ରଫୁଲ୍ଲଚନ୍ଦ୍ର ଦାସଅଧିକାରୀ, ବିଜୟଚନ୍ଦ୍ର ଦାସଅଧିକାରୀ,ଏମାନଙ୍କୁ ନେଇ ପୂରା ଦମ୍‌ରେ ଖେଳ ଚାଲିଲା । ବିଳମ୍ବରେ ପଡ଼ିଆକୁ ଆସିଥିବାରୁ ରାତିପ୍ରାୟ ୬.୩୦ପର୍ଯ୍ୟନ୍ତ ଖେଳ ହୁଏ । ଚନ୍ଦ୍ରମା ରାତିରେ ଦିନେ ଦିନେ ଆଠଟା ରାତି ମଧ ହୋଇଯାଏ । ଏଣୁ ଉକ୍ତ ଟିମ୍‌ର ନାମ ଥିଲା କରଞ୍ଜିଆ "Sunset team ।"

ଇତିମଧରେ ଉକ୍ତ ଗ୍ରାମର ଭଗବାନ ପଣ୍ଡା ଯାହାଙ୍କର ଉକ୍ତ ପଡ଼ିଆରେ ଖଣ୍ଡିଏ ଜାଗା ଥାଏ, ସେ ଜମିକୁ ସେ ଥରେ ହଳ କରିଦେଲେ । ଆମେ ତା'ସତ୍ତ୍ୱେ ମଧ ଖେଳୁଥାଉ । କିନ୍ତୁ ଦେଖିଲୁ ଯେ ଆହୁରି କେତେକ ମଧ ହଳ କରିବାକୁ ଆରମ୍ଭ କଲେ । ମହାଚିନ୍ତାରେ ପଡ଼ିଲୁ । ସେହି ସମୟରେ ବର୍ତ୍ତମାନ ଯାହା ଷ୍ଟାଡିୟମ ହୋଇଛି, ତାହା ଜଙ୍ଗଲ ଓ ଖାଲି ଢିପ ହୋଇ ପଡ଼ିଥାଏ । ଉକ୍ତ ସ୍ଥାନଟି ଜେଲ ଡିପାର୍ଟମେଣ୍ଟର । ମୁଁ ପିଲାଙ୍କୁ ଧରି ଉକ୍ତ ପଡ଼ିଆକୁ ପରିଷାର ଓ ସମତଳ କରିବାକୁ ଆରମ୍ଭ କରିବାରୁ ତତ୍‌କାଳୀନ ଜେଲର୍ ପ୍ରଥମେ ଆମକୁ ମନା କଲେ । କିନ୍ତୁ ଆମେ ତାଙ୍କୁ ବୁଝାଇ ପଡ଼ିଆ ତିଆରି କଲୁ । ସକାଳ ୭ଟାରେ କୋଡ଼ି, ସାବଳ ଆଦି ନେଇ ପହଞ୍ଚୁ, କାମ ସାରି ପ୍ରାୟ



Digitized by srujanika@gmail.com

ଗୋଟାଏ/ଦୁଇଟାବେଳେ ଫେରୁ । ମଝିରେ ଦି'ବୋଝ କାକୁଡ଼ି କିଣି ଲୁଣ ଲଙ୍କାଦେଇ ପେଟ ଭର୍ତ୍ତି କରୁ । ଗୋଟାଏ ମଜା କଥା ମନେ ପଡୁଚି । ଗୋଟିଏ ଆଙ୍ଗୁଳି ମୋଟା କେନ୍ଦୁ ଗଛକୁ କାଟି ତହିଁର ଚେର ବାହାର କରିବାକୁ ଯାଇ ଦେଖୁ ତା ମୂଳଟି ହାତେ ଦୁଇ ହାତ ମୋଟା । ଖୋଳୁ ଖୋଳୁ ପ୍ରାୟ ତିନି/ଚାରି ହାତ ଖୋଳିବାକୁ ପଡ଼ିଲା । ଯାହାହେଉ ଅକ୍ଲାନ୍ତ ପରିଶ୍ରମ କରି ଜାଗାଟି ସମତଳ କରି ପଡ଼ିଆଟି ତିଆରି କଲୁ ଓ ସେ ବର୍ଷ ବିଜୟା ଦଶମୀ ଦିନ ପଡ଼ିଆଟି ଉଦ୍‌ଘାଟନ କଲୁ ଓ ଟିମ୍‌ର ନାମ ଦେଲୁ ବିଜୟା ଫୁଟ୍‌ବଲ୍ ଏସୋସିଏସନ୍ । ତହିଁପୂର୍ବରୁ ଦୋଳ ପଡ଼ିଆରେ ଖେଳୁଥିବା ସମୟରେ ରାଇରଙ୍ଗପୁର ଫୁଟ୍‌ବଲ୍ ଟୁର୍ଣ୍ଣାମେଣ୍ଟରେ ଭାଗ ନେଇ ସିଲଡ୍ ଜିତି ଆଣିଥିଲୁ । କେନ୍ଦୁଝର ଟୁର୍ଣ୍ଣାମେଣ୍ଟ୍ ଯାଇ ମଧ୍ୟ ସିଲଡ୍ ଆଣିଥିଲୁ । କେନ୍ଦୁଝର ଗଲାବେଳେ ଆଠଟି ସାଇକେଲରେ ପନ୍ଦରଜଣ ପିଲା ଯାଇ ଜସିପୁର ମଠରେ ରାତିରେ ଖାଇ ପିଇ ରହି, ତହିଁ ପରଦିନ ବାଦାମ ପାହାଡ଼ ଯାଇ ସେଠାରୁ ରାଇରଙ୍ଗପୁର ଯାଇଥିଲୁ । ସେଠାରେ 'ଠାକୁର' ବଂଶ ଆମକୁ ସବୁଥିରେ ବଡ଼ ସାହାଯ୍ୟ କରୁଥିଲେ । ଇତିମଧ୍ୟରେ ଶ୍ରୀ ବିଶ୍ୱନାଥ  ସାହୁ ପଢ଼ା ଛାଡ଼ି କରଞ୍ଜିଆ ଆସିଲେ । ସେ ଫୁଟବଲ ଖୁବ୍ ଭଲ ଖେଳୁଥିଲେ । ତତ୍‌ସମୟରେ ଆଉ କେତେକ ନୂଆ ଖେଳାଳି ବାହାରିଲେ । ସେମାନଙ୍କ ସମସ୍ତଙ୍କ ନାମ ମନେ ନାହିଁ ତେବେ ଭଲ ଖେଳାଳି ଥିଲେ ଆନନ୍ଦଚନ୍ଦ୍ର ପୋଥାଳ, ରବି ପରିଡ଼ା, ଚିତ୍ତରଞ୍ଜନ ସାହୁ, ଅକ୍ଷୟ ପୃଷ୍ଟି, କୃଷ୍ଣଚନ୍ଦ୍ର ଦାସ(କୃଷ୍ଣନିଆ), ଚନ୍ଦନ ଦେହୁରୀ । ବାରିପଦାରୁ ଗୋପାଲ ବୋଷ ଚାକିରିରେ ବଦଳି ହୋଇ ଆସି କରଞ୍ଜିଆରେ ପହଞ୍ଚିବା ପରେ ନୂତନ ପିଢ଼ିର ଖେଳାଳି ଗୌରୀଶଙ୍କର ସାହୁ, ପୂର୍ଣ୍ଣଚନ୍ଦ୍ର ଖଟୁଆ ଇତ୍ୟାଦି ପିଲା ନୂତନ ଉନ୍ମାଦନାରେ ଖେଳର ମାନ ମହୁତ ଉଚ୍ଚକୁ ନେଇଥିଲେ ।

୧୯୫୩ ସାଲରେ ଏସ.ଡି.ଓ. ହିସାବରେ ପହଞ୍ଚିଲେ ଆନନ୍ଦଗୋପାଳ ଭଟ୍ଟାଚାର୍ଯ୍ୟ । ତାଙ୍କ ଉତ୍ସାହ, ଏମ.ଏଲ.ଏ. ବିଶ୍ୱନାଥ ସାହୁ ଓ ଟାଉନ୍ କ୍ଲବ୍‌ର ସେ ସମୟର ସେକ୍ରେଟେରୀ (ଅନେକ ସମୟର ଫୁଟବଲ୍ ମେଚ୍ ରେଫରୀ) ବିରଞ୍ଚିନାରାୟଣ ପୃଷ୍ଟିଙ୍କ ପ୍ରଚେଷ୍ଟାରେ ବର୍ତ୍ତମାନ ଷ୍ଟାଡିୟମ୍ ପଡ଼ିଆ ସରକାରଙ୍କଠାରୁ ମିଳିଲା । କରଞ୍ଜିଆ ଫୁଟବଲ୍ ଖେଳକୁ ଆଉ ଜଣେ ଅଫିସରଙ୍କ ଦାନ ଭୁଲି ହେବ ନାହିଁ । ସେ ହେଲେ ଲକ୍ଷ୍ମୀପ୍ରସାଦ ମହାନ୍ତି-ସେକେଣ୍ଡ ଅଫିସର୍ ହୋଇ ଜଏନ୍ କରି ଗୋଲ୍ ପୋଷ୍ଟରେ ଆସି ଛିଡ଼ା ହୋଇଗଲେ ସେ । ମୁଁ ଅଧିକାଂଶ ସମୟରେ ବେକ୍ ପୋଜିସନ୍‌ରେ ଖେଳୁଥିଲି । ମୋର ଫୁଟବଲ୍ ଖେଳ ପ୍ରଥମେ ବାରିପଦାରେ ଆରମ୍ଭ ହୋଇଥିଲା । ଗୋଲ୍ କିପରରୁ ଭଦ୍ରଖରେ ରେଲୱେ ସହ ଖେଳି ଦକ୍ଷତା ଲାଭ କରିଥିଲି ଓ Half back, Right back ଶେଷରେ କେବଳ Right backରେ ହିଁ ଖେଳୁଥିଲି । ମୋର ସଟ୍ ଏତେ ଲମ୍ବା ଥିଲା ଯେ ଅନ୍ୟପଟ ଗୋଲ୍ ଏରିଆରେ ବଲ୍ ପକାଉଥିଲି । ମୋର ଏପରି ସଟ୍ ଦେଖି ରାଇରଙ୍ଗପୁରର ଲୋକେ ମୋତେ ପାୟାଁଜି ବୋଲି କହୁଥିଲେ । ସେ ସମୟରେ ଦେହର ଜୋର୍‌ରେ



Digitized by srujanika@gmail.com

ଖେଳ ହେଉଥିଲା । କିନ୍ତୁ ବର୍ତ୍ତମାନ ଖେଳର ପଦ୍ଧତି କେତେ ବଦଳି ଗଲାଣି । ମୁଁ ସନ ୧୯୬୦-୬୧ ସାଲ ପର୍ଯ୍ୟନ୍ତ ଅର୍ଥାତ୍ ମୋର ବୟସ ୫୦/୫୧ ବର୍ଷ ପର୍ଯ୍ୟନ୍ତ ଫୁଟବଲ ଖେଳୁଥିଲି । ଲୁମ୍ବାଗୋ ପରି କଷ୍ଟ ହେବାରୁ ଡାକ୍ତର ମୋତେ ନ ଖେଳିବାପାଇଁ ପରାମର୍ଶ ଦେଲେ । ଆଉ ମଧ ମୁଁ କହିଥିଲି ଯେଉଁଦିନ "ମୋ ପୁଅ ମୋ ସହିତ ପଡ଼ିଆରେ ଖେଳିବାପାଇଁ ଛିଡ଼ା ହେବ ସେଇଦିନଠୁ ମୁଁ ଆଉ ଖେଳିବି ନାହିଁ।" ଭଗବାନଙ୍କ ଇଚ୍ଛା, ଯେଉଁବର୍ଷ ଡାକ୍ତର ମୋତେ ନ ଖେଳିବାପାଇଁ ପରାମର୍ଶ ଦେଲେ ସେହି ବର୍ଷ ଦିନେ ଖେଳିବା ଅବସ୍ଥାରେ ଦେଖିଲି ଯେ ମୋର ପୁଅ ଜାପାନି ମୋ ବିରୁଦ୍ଧରେ ଛିଡ଼ା ହୋଇଛି । ସେ ଇଞ୍ଜିନୟରିଙ୍ଗ୍ କଲେଜରେ ପଢୁଥିଲା । ଛୁଟିରେ ଆସି କରଞ୍ଜିଆ Vs ବାହାର ପିଲା ମ୍ୟାଚ୍‌ରେ ଓହ୍ଲାଇଥାଏ । ତାକୁ ଦେଖିଲାମାତେ ମୁଁ ଖେଳ ପଡ଼ିଆରୁ ବାହାରି ଆସିଲି । ସେହି ଦିନଠୁ ଆଉ player ହିସାବରେ ଖେଳି ନାହିଁ ।

ମୁଁ ପ୍ରଥମେ କରଞ୍ଜିଆରେ ଖେଳ ଆରମ୍ଭ ସମୟରେ କେତେଗୁଡ଼ିଏ ପିଲାଙ୍କୁ ପଢ଼ାଉଥିଲି । ସେମାନଙ୍କ ମଧ୍ୟରୁ ବର୍ତ୍ତମାନ ଶ୍ରୀ ରାଧାଶ୍ୟାମ ନାଏକ, ଭୋଳାନଥ ଦାସ, ନରହରି ବେହେରା, ରବୀନ୍ଦ୍ର ପରିଡ଼ା, ବୀର ପରିଡ଼ା ପ୍ରଭୃତିଙ୍କ ନାମ ମନେ ଅଛି । ଖେଳ ଖେଳିବା ସଙ୍ଗେ ସଙ୍ଗେ କରଞ୍ଜିଆରେ ଗୋଟିଏ ଡ୍ରାମାଟିକ୍ କ୍ଲବ ସନ ୧୯୩୨ ସାଲରେ ପ୍ରଦୀପ ଚନ୍ଦ୍ର ନାଟ୍ୟ ସଂଘ ନାମରେ ଆରମ୍ଭ କରିଥିଲି । ଯେଉଁମାନଙ୍କ ସହ ପ୍ରଥମେ ସୁଦାମା ନାଟକ ଆରମ୍ଭ କରିଥିଲି ସେମାନେ ଓ ପରେ ବହୁ ପିଲାଙ୍କୁ ନେଇ ପ୍ରଥମେ ପୁରୁଣା ସିନେମା ହଲ ସାମନାରେ ଆମର ଯେଉଁ ଟିଣଘର ଥିଲା ତହିଁର ମଝି କୋଠରିରେ ଆରମ୍ଭ କରାଗଲା । ଗିରୀଶ ଚନ୍ଦ୍ର କର ସମୟ ସମୟରେ ଧରଣୀଧର ମହାନ୍ତି ହାର୍‌ମୋନିୟମ ବଜାଉ ଥିଲେ ଓ କୈଳାସ ଚନ୍ଦ୍ର ରାଉଳ ତବଲା ବଜାଉଥିଲେ । ଦିନେ ହଠାତ୍ ଶୈଳ ସାହୁ ଓ ଗିରୀଶ ଚନ୍ଦ୍ର କର ମଧ୍ୟରେ କଳିକଜିଆ ହୋଇ ଗିରୀଶ ଚନ୍ଦ୍ର କର ଆଉ ହାରମୋନିୟମ୍ ବଜାଇଲେ କାହିଁ । ହାରମୋନିୟମ୍ ବାଦକର ସନ୍ଧାନରେ ଥାଉ । ଦିନେ ଗୁରୁବାର ହାଟ ଦିନ (ବର୍ତ୍ତମାନ ସିନେମାହଲ ଦୈନିକ ମାର୍କେଟ୍ ହେଉଥିବା ସ୍ଥାନରେ ସେତେବେଳେ ହାଟ ବସୁଥିଲା ।) ରାଇଟାଙ୍ଗରିଆ, ବରଜୁ ନାଏକ ନାମିତ ଜଣେ ଯୁବକକୁ ନେଇ ପହଞ୍ଚିଲା । ବରଜୁ ନାଏକର ଘର ଏଇ କରଞ୍ଜିଆରେ, କିନ୍ତୁ ସେ ଗୋରୁମହିଷାଣି ଆଡ଼େ ଯାଇ କେଉଁ ଯାତ୍ରା ଦଳରେ ଥିଲା । ଯାହାହେଉ ତାକୁ ଦେଖି ପ୍ରଥମେ ମୁଁ ଗୋଟିଏ ଗୀତ ଗାଇବାପାଇଁ କହିଲି । ସେ ହାରମୋନିୟମ ସାହାଯ୍ୟରେ 'ପାରିହେବୁ ଯଦି ଏ ଭବସାଗରୁ ହରି ନାମ ଧରିରେ ଧରିରେ' ଗୀତଟି ଗାଇଲା । ଭଲ ଗାଇଲା, ତେବେ ଗାଇବା ଅପେକ୍ଷା ହାରମୋନିୟମ ବଜାଇବାର ଢଙ୍ଗ ମୋତେ ମୁଗ୍ଧ କଲା । ତତ୍‌କ୍ଷଣାତ୍ ତାକୁ ଯୋଗ ଦେବାପାଇଁ କହିଲି । ସେ ତିନିଦିନ ପରେ ଆସି ଯୋଗ ଦେଲା । ତା'ର ଯୋଗ ଦେବା ପରେ ପରେ ଛୋଟପିଲାଙ୍କୁ ନେଇ



Digitized by srujanika@gmail.com

ସେ ନାଚ ଶିକ୍ଷା ମଧ୍ୟ ଆରମ୍ଭ କଲା । ହାରମୋନିୟମ ମାଷ୍ଟ୍ରଙ୍କୁ ଘରୁ ଧାନ ଦେଇ ପୋଷା ହେଉଥାଏ ।

ଇଏ ପ୍ରଦୀପ ଚନ୍ଦ୍ର ନାଟ୍ୟ ସଂଘର ଶୁଭାରମ୍ଭ । କିଛି ଓଡ଼ିଆ ଓ ବଙ୍ଗଳାରୁ ଅନୁବାଦ କରି ପୌରାଣିକ ଐତିହାସିକ ନାଟକ ରିହାଇସାଲ ଆରମ୍ଭ ହେଲା । ବଡ଼ କଥା ହେଲା ପାଟିର ସରଞ୍ଜାମ ବ୍ୟବସ୍ଥା କରିବା । ଏତିକି ବେଳକୁ ଆମ ଭାଇଭାଗ ହୋଇଗଲାଣି । ମୋ ଭାଗରେ ଜମି ଘର ଇତ୍ୟାଦି ପରେ ହାତକୁ ଯାହା ଟଙ୍କା ପଡ଼ିଥିଲା ସେଥିରୁ କିଛି ନେଇ କଲିକତା ଗଲୁ । ଯେତିକି ନିହାତି ଦରକାର, ଧରିଆସିଲୁ । ତା'ପରେ ଚାଲିଲା ଥିଏଟର । ମୟୂରଭଞ୍ଜ, କେନ୍ଦୁଝର, ନୀଳଗିରି, ମେଦିନିପୁର, ଷଢ଼େଇକଲା ଖରସୁଆଁ ଅଞ୍ଚଳକୁ ଯାତ୍ରା ସମୟରେ ରଜା ମହାରାଜାଙ୍କ ସହ ଜମିଦାର ମଠ ମହନ୍ତଙ୍କ ନିମନ୍ତ୍ରଣ କ୍ରମେ ଚାଲିଲୁ ଥିଏଟର କରିବାକୁ । ରାସ୍ତା ଖର୍ଚ୍ଚ, ରହିବା ଖାଇବା ବ୍ୟବସ୍ଥା ସହ ଗୋଟେ ସିନ୍ କିଛି ସରଞ୍ଜାମ ସହ ଉପଢୌକନ ନେଇ ମନ ଆନନ୍ଦରେ ଫେରୁ । ସବୁଠାରୁ ବଡ଼ ପ୍ରାପ୍ୟ ମିଳୁଥାଏ 'ବାହାବା'ରେ–ପ୍ରଶଂସାରେ ପୋତି ହୋଇ ପଡୁଥାଉ ।

ଏମିତି ଜୁବ ଆଉ ଖେଳ, ଥିଏଟରରେ ମାତି ଆନନ୍ଦରେ ଥାଏ । ଭାଇ ଭାଗ ପରେ ହାତରେ ଅର୍ଥର ବିଶେଷ ଅଭାବ ନ ଥାଏ । ଜମି ଚାଷ ହୁଏ–କେଉଁଠି କଣ ହୁଏ ଖବର ମୁଁ ନିଏ ନାହିଁ କି ଜାଣିବାକୁ ଚେଷ୍ଟା କରି ନାହିଁ । ସେ ସବୁ ନବବିବାହିତା ପତ୍ନୀଙ୍କ ମୁଣ୍ଡରେ । ଏମିତି ଚାଲିଲା ପିଲାପିଲି ଜନ୍ମହେବା ପର ଅର୍ଥଚିନ୍ତା ପର୍ଯ୍ୟନ୍ତ । ଅର୍ଥଚିନ୍ତାର ଇତିହାସ ଏବେ ନୁହେଁ ପୁଣି ଆରମ୍ଭ କରିବି । ଏ ଖାତାଟା ଶେଷ ପୃଷ୍ଠାରେ ପହଞ୍ଚିଲାଣି ।



Digitized by srujanika@gmail.com

